ସଚ୍ଚିଦାନନ୍ଦ ରାଉତରାୟ

# ଆଧୁନିକ ସାହିତ୍ୟର କେତେକ ଦିଗ

# ଆଧୁନିକ ସାହିତ୍ୟର କେତେକ ଦିଗ

ସଚ୍ଚିଦାନନ୍ଦ ରାଉତରାୟ

ଦିଗନ୍ତ ପ୍ରକାଶିନୀ
ମିସନ୍ ରୋଡ଼୍
କଟକ-୭୫୩୦୦୧

# ଆଧୁନିକ ସାହିତ୍ୟର କେତେକ ଦିଗ

**Adhunika Sahityar Ketak Diga**

ପ୍ରକାଶକ :

**ଦିଗଂତ ପ୍ରକାଶିନୀ**

ମିସନ୍ ରୋଡ୍, କଟକ-୭୫୩୦୦୧



ପ୍ରଥମ ସଂସ୍କରଣ

ଅକ୍ଟୋବର ୧୯୮୩

ମୁଦ୍ରକ : ରେନେସାଁ ପ୍ରିଂଟରସ୍
ନୂଆବଜାର, କଟକ-୪

**ମୂଲ୍ୟ : ଟ୧୨-୦୦**

# ଅଗ୍ରଲେଖ

"ଆଧୁନିକ ସାହିତ୍ୟର କେତେକ ଦିଗ" ଶୀର୍ଷକ ପ୍ରବନ୍ଧ ସଂକଳନଟି ଦିଗନ୍ତ ପ୍ରକାଶିନୀ ତରଫରୁ ପ୍ରକାଶ ପାଉଛି । ଏହି ପ୍ରବନ୍ଧଗୁଡ଼ିକରେ ଆଧୁନିକ ସାହିତ୍ୟର ବିଭିନ୍ନ ବିଭାବ ଯଥା; କାବ୍ୟ, କବିତା, ଗଳ୍ପ, ଉପନ୍ୟାସ ଓ ସମାଲୋଚନା ସାହିତ୍ୟ ଉପରେ ଅଧ୍ୟୟନମୂଳକ ବିସ୍ତୃତ ବିମର୍ଶ ଓ ଆଲୋଚନା କରାଯାଇଛି ।

ଏଥିରେ ସନ୍ନିବେଶିତ କେତେକ ପ୍ରବନ୍ଧ ଦିଗନ୍ତର ସଂପାଦକୀୟ ଅଗ୍ରଲେଖ ରୂପେ ପ୍ରକାଶ ପାଇଥିଲା । ଏହାଛଡ଼ା ଅନ୍ୟ କେତୋଟି ନୂତନ ନିବନ୍ଧ ଏହି ସଂକଳନରେ ସ୍ଥାନ ପାଇଛି ।

ଏ ପୁସ୍ତକର ଗ୍ରନ୍ଥନ କାର୍ଯ୍ୟରେ ଅଧ୍ୟାପକ ଗିରିଜା କୁମାର ବଳିଆରସିଂହଙ୍କ ସହାୟତା ଉଲ୍ଲେଖଯୋଗ୍ୟ ।

ସୁଧୀ ସମାଜରେ ପୁସ୍ତକଟି ଆଦୃତ ହେଲେ ମୁଁ ଶ୍ରମ ସାର୍ଥକ ମନେ-କରିବି ।

ମିସନ୍‌ରୋଡ଼
କଟକ-୭୫୩୦୦୧ — ସଚ୍ଚିଦାନନ୍ଦ ରାଉତରାୟ
ତା୨୨ । ୧୦ । ୮୩

# । ସୂଚୀପତ୍ର ।

# ସାହିତ୍ୟର ଆଙ୍ଗିକ ବନାମ ଆତ୍ମା

[ରସ ହିଁ ଶିଳ୍ପ ଓ ସାହିତ୍ୟର ପ୍ରାଣବସ୍ତୁ ଏବଂ
ଆଙ୍ଗିକ ଏହାର ବହିରଙ୍ଗ ଓ ମାଧ୍ୟମ । ବ୍ୟକ୍ତି-
ମାନସ ମଧ୍ୟଦେଇ ରସର ପ୍ରକାଶ ହେଲେ ମଧ୍ୟ
ସମାଜମାନସ—ଯାହାର ଆଶ୍ରୟସ୍ଥଳୀ ହେଲା
ମୁଖ୍ୟତଃ ମଗ୍ନଚୈତନ୍ୟ—ଏହାର ଉତ୍ପତ୍ତିସ୍ଥାନ ।
ଆଙ୍ଗିକ ପରିବର୍ତ୍ତନଶୀଳ । ତେଣୁ କାବ୍ୟଜିଜ୍ଞାସାରେ
କୌଣସି ଆଙ୍ଗିକ ଶେଷ କଥା ହୋଇ ନ ପାରେ]

[ସାହିତ୍ୟର ଆଂଗିକ କହିଲେ ସାଧାରଣତଃ ଆମେ ଏହାର ବହିରଂଗକୁ ହିଁ ବୁଝୁଁ । ମାତ୍ର 'ଆତ୍ମା' କହିଲେ କଣ ବୁଝିବା ? ବେଦାଂତ ଦର୍ଶନ ଆତ୍ମା ଅର୍ଥରେ ଦେହ, ମନ ଓ ଏପରିକି ଚୈତନ୍ୟର ଅତୀତ ଏକ ଅବ୍ୟୟ, ଅକ୍ଷୟ, ଅବିନାଶୀ ଜିନିଷକୁ ବୁଝାଏ, ଯାହା ଦେହର ଅବସାନ ପରେ ବି ଅକ୍ଷତ ଓ ଅବିଭକ୍ତ ରହେ, ଜୀର୍ଣ୍ଣବସ୍ତ୍ର ପରି ଗୋଟିଏ ଦେହକୁ ଛାଡ଼ି ଅନ୍ୟ ଦେହରେ ପ୍ରବେଶ କରେ, ଯାହାକୁ ନୈନଂ ଛିଂଦଂତି ଶସ୍ତ୍ରାଣି, ନୈନଂ ଦହତି ପାବକଃ । ଏ ଭଳି ଏକ ଅଚ୍ଛେଦ୍ୟ, ଅଦାହ୍ୟ, ଅକ୍ଲେଦ୍ୟ ଆତ୍ମା ଶିଳ୍ପ ବା ସାହିତ୍ୟର ଅଛି କି ? ଆଧୁନିକ ବିଜ୍ଞାନ ଆତ୍ମାକୁ ସ୍ୱୀକାର କରେ ନାହିଁ । ଯଦି ବା କେହି କେହି ବସ୍ତୁବାଦୀ 'ଆତ୍ମା' ଶବ୍ଦ ବ୍ୟବହାର କରିଥାଂତି, ତାହା କେବଳ ଆଧିଭୌତିକ ବା spiritual ଅର୍ଥରେ । ଷ୍ଟାଲିନ୍ ଥରେ ଶିଳ୍ପୀ ଓ ସାହିତ୍ୟିକମାନେ engineer of the soul ବୋଲି କହିଥିଲେ । ତାହା କେବଳ spiritual ଅର୍ଥରେ ହିଁ ।]

ଷଡ଼ଶାସ୍ତ୍ର ଦର୍ଶନ କହେ, 'ଏକ ଥିଲି' । 'ଏକୋ ସତ୍' । ଏହି 'ସତ୍'ହେଉଛି 'ଯାହା ଅଛି' ବା ବହିଃପ୍ରକୃତି, ଯାହା ଭିତରେ ମୁଁ ବି ଅଛି । ଏହି ବହିଃପ୍ରକୃତି ସହିତ ଚାଲିଛି ମୋର ଅନବରତ ସଂଘର୍ଷ । ଏହି ସଂଘର୍ଷ ଫଳରେ ସତ୍ ହୋଇଛି ଦୁଇ—ସତ୍ ଓ ଚିତ୍ । ଅଖଂଡ ପ୍ରକୃତି ମଣିଷ ପାଖରେ ଦୁଇ ଭାଗରେ ବିଭକ୍ତ ହୋଇ, ହୋଇଛି ମାନବ-ପ୍ରକୃତି ଓ ବହିଃପ୍ରକୃତି । ଏହି ଦୁହିଂକ ଦ୍ୱଂଦ୍ୱ ବା ମିଳନ-ବିରୋଧରୁ ଆସିଛି ଆନଂଦ—ଆସିଛି ରସ । ବହିଃପ୍ରକୃତି ସଂଗରେ ମୋର ଦ୍ୱଂଦ୍ୱ ସଂଭବ ହେଲା, ମୋର ପ୍ରାକୃତ ସତ୍ତା ଏବଂ ତାର ସଂକୀର୍ଣ୍ଣତର ରୂପ ସାମାଜିକ ସତ୍ତା ଅଛି ବୋଲି । ସତ୍‌ରୁ ଜନ୍ମ ନେଇଛି ଚିତ୍ ଓ ସତ୍ ଏବଂ ଚିତ୍ ମଧ୍ୟରେ ଚାଲିଥିବା ସଂଘର୍ଷ ଓ ଦେବା-ନେବା ଭିତରୁ ହିଁ ସୃଷ୍ଟି ହୋଇଛି ଶ୍ରମ ଏବଂ ଛଂଦୋବଦ୍ଧ ସାର୍ଥକ ଶ୍ରମ ଭିତରୁ ହିଁ ଜନ୍ମ ନେଇଛି ସୃଷ୍ଟିର ଆନଂଦ—ଯାହାର ରୂପାୟନ ଘଟିଛି ଶିଳ୍ପ, ସାହିତ୍ୟ, ସଂସ୍କୃତି, ବୈଜ୍ଞାନିକ ଉଦ୍‌ଭାବନ ଓ ମୋଟ୍ ଉପରେ ସଭ୍ୟତା ଭିତରେ ।

ମୁଁ ଯଦି ପ୍ରକୃତିର ବଶ ମାନି ପ୍ରକୃତିର ଖୁସି ମୁତାବକ ଚଳୁଥାଂତି, ତେବେ ମୁଁ ମଣିଷର ବିମୂର୍ତ୍ତର ସ୍ତର ପଶୁ ପର୍ଯ୍ୟାୟରେ ହିଁ ରହିଥାଂତି । ପ୍ରକୃତିକୁ ଜୟ କରିବା ପାଇଁ ସମବେତ ଶ୍ରମର ଭାଗିଦାରେ ସମାଜବଦ୍ଧ ହୋଇ ନ ଥାଂତି କି ମୋର ଚେତନାର ଓ ବସ୍ତୁର-ଶକ୍ତିର ବିକାଶ ଘଟି ନଥାଂତା ଅର୍ଥାତ୍ ଚିତ୍ର ବିକାଶ ଘଟି ନଥାଂତା । ମୁଁ ରହିଥାଂତି ଏକ ନିର୍ଜ୍ଜନ ଗୁହାରେ ପ୍ରକୃତି-ଦତ୍ତ ଫଳମୂଳ ଖାଇ, ସେତିକରେ ସଂତୁଷ୍ଟ ହୋଇ । 'ଏକକ' ମଣିଷର ଭାଷାର ପ୍ରୟୋଜନ ଥାଇ ନ ପାରେ, ଆଉ ଭାଷା ନ ଥିଲେ ମାନବୀୟ ବସ୍ତୁର-ବୁଦ୍ଧିର ଉନ୍ମେଷର କୌଣସି ପ୍ରଶ୍ନ ହିଁ ଉଠେନା ।

ବ୍ୟକ୍ତି ଚେତନା ସବୁକ୍ଷେତ୍ରରେ ସଂସ୍କୃତିର ବାହନ ମାତ୍ର; ଉତ୍ସ ନୁହେଁ, ବିଭିନ୍ନ ସ୍ତରରେ । ସାମାଜିକ ଉପଲବ୍ଧି ତାର ଉତ୍ପତ୍ତି ସ୍ଥାନ ଏବଂ ଏହି ସାମାଜିକ ଉପଲବ୍ଧିର ଅନ୍ତିମ ଉତ୍ସ ନିହିତ ଅଛି ମଣିଷର ସାମାଜିକ ଜୀବନ ମଧ୍ୟରେ, ଅର୍ଥାତ୍ ସାମାଜିକ ଓ ସମାଜ ସଂପର୍କ ଯେଉଁ ଉତ୍ପାଦନ-ଭିତ୍ତି ଉପରେ ଗଢ଼ି ଉଠେ, ତା'ର ମଧ୍ୟରେ । *

କର୍ମ ମଧ୍ୟରେ ହିଁ ହୁଏ ପ୍ରକୃତି ସହିତ ମଣିଷର ସଂବନ୍ଧ ସ୍ଥାପନ—ଅତିଂରଂଗ ପରିଚୟ; କେବଳ ବହିଃପ୍ରକୃତି ଯଥା ନଦୀ, ପାହାଡ଼, କ୍ଷେତ, ଖମାର, କଳ କାର-ଖାନା ଇତ୍ୟାଦି ସଂଗେ ନୁହେଁ, ମଣିଷର ଅଂତଃପ୍ରକୃତି ଯଥା ଭାବ, ଆବେଗ, ଇଚ୍ଛା ସଂଗରେ; ଏକ କଥାରେ ମଣିଷର ଅଂତର୍ନିହିତ ସମସ୍ତ ଶକ୍ତି ସଂଗରେ । କର୍ମ ମଧ୍ୟରେ ହିଁ ମଣିଷ ଚହ୍ନେ ତାର ପରିପାର୍ଶ୍ୱକୁ, ପରିପାର୍ଶ୍ୱରେ ମଣିଷ ଚହ୍ନେ ନିଜକୁ । ବସ୍ତୁତଃ ବିଭିନ୍ନ ସ୍ତରରେ ସାମାଜିକ ଚେତନାର ବାହାରେ କୌଣସି ଜିନିଷକୁ ନେଇ ଚିଂତା କରିବା ମଣିଷ ପକ୍ଷରେ, ସେ ଯେତେ ଅସାଧାରଣ ହେଉ ନା କାହିଁକି, ଆଦୌ ସଂଭବ ନୁହେଁ । ଏହାର ଅର୍ଥ, ଦାର୍ଶନିକମାନେ ସୁକୁମାର ଶିଳ୍ପର ମୂଳଉତ୍ସ ରୂପେ ଯେଉଁ Intuition ବା ସ୍ୱଜ୍ଞାର କଥା କହଂତି, ଯାହା ବୁଦ୍ଧିଠାରୁ ଅଧିକ ଗଭୀର ଓ ପ୍ରଖର, ତାହା ଏହି ସାମାଜିକ ଉପଲବ୍ଧି ମାତ୍ର । ମନସ୍ତତ୍ତ୍ୱବିତ୍ ୟୁଂଗଂକ ମତରେ ଅପରିବର୍ତ୍ତନୀୟ ସମାଜ-ମାନସ ବା Collective mind ହିଁ ପରିବର୍ତ୍ତନଶୀଳ ବ୍ୟକ୍ତି ମାନସର ସଂଚିତ ଧନ ଅଂଶ ଯଥା ଧ୍ୟାନ-ଧାରଣା, ଇଚ୍ଛା କାମନାର ମୂଳ ଉତ୍ସର ଭଂଡାର । ସ୍ୱଜ୍ଞାର ଅଂତିମ ଭିତ୍ତି ସାମାଜିକ ଜୀବନ, ପ୍ରକୃତି ସଂଗେ ମଣିଷର ଦ୍ୱଂଦ୍ୱ (ଅର୍ଥାତ୍ ମିଳନ-ବିରୋଧ) ଓ ସମାଜର ବାସ୍ତବ ଉତ୍ପାଦନ ବ୍ୟବସ୍ଥା । ଏହି ଉତ୍ପାଦନ ସଂପର୍କ ହିଁ ବିଭିନ୍ନ ସ୍ତରରେ ସମାଜ-ସଂପର୍କର ଛାଂଚ ଏବଂ ଧ୍ୟାନ ଧାରଣା, ମୂଲ୍ୟବୋଧ

---

* 'ଶିଳ୍ପ-ଦର୍ଶନର ଭୂମିକା'ରୁ ଗୃହୀତ ।

ଆତ୍ମମୁଖ୍ୟ ଇତ୍ୟାଦି ସୃଷ୍ଟି କରିଥାଏ, ଯାହା ଶିଳ୍ପ, ସାହିତ୍ୟ ପ୍ରଭୃତିରେ ପ୍ରତିଫଳିତ ହୋଇଥାଏ ।

ଯେଉଁ ମଣିଷ ସାମାଜିକ ଜୀବନର ବାହାରେ, ସମସ୍ତ ମାନବୀୟ ପ୍ରବୃତ୍ତି ନେଇ ଜନ୍ମ ହୋଇଥିଲେ ମଧ୍ୟ ତା'ଠାରେ ମାନବୀୟ ଚେତନାର ଉନ୍ମେଷ ଘଟେ ନାହିଁ । କେତେକ ଭାବବାଦୀ ଦାର୍ଶନିକ ଯୁକ୍ତି କରିଥାଂନ୍ତି ଯେ ଚେତନା ସ୍ୱୟଂଭୂ, ସମାଜ-ନିରପେକ୍ଷ, ଅନ୍ୟ କଥାରେ ମାନବ-ନିରପେକ୍ଷ । ସେମାନେ କହନ୍ତି ଚେତନା ବସ୍ତୁପୁଂଜର କ୍ରମପରିଣାମ ବା ଗୁଣାତ୍ମକ ରୂପାଂତର ହୋଇ ନ ପାରେ । ଏଠାରେ ସାଂପ୍ରତିକ କାଳର କେତୋଟି ଦୃଷ୍ଟାଂତ ଦେଇ ସେମାନଂକ ଯୁକ୍ତି ଖଂଡନ କରି-ଯାଇପାରେ । ଆଜିକି ପ୍ରାୟ ୩-୪ ବର୍ଷତଳେ Illustrated Weekly of Indiaରେ ଫଟୋଚିତ୍ର ସହ ଏକ ବିବରଣୀ ପ୍ରକାଶ ପାଇଥିବାର ଅନେକ ଦେଖି-ଥିବେ । ଲକ୍ଷ୍ନୌ ନିକଟବର୍ତ୍ତୀ ଏକ ଗ୍ରାମରେ ଏକ କୃଷକ ଘରେ ଗୋଟିଏ ଜାମ୍ନି ଦେଢ଼ ବର୍ଷର ଏକ ଝିଅକୁ ଗୋଟିଏ ଗଧିଆ ନେଇଯାଇ ଜଂଗଲରେ ପାଳୁଥିଲା । ସେହିଦିନୁ ସେ ଗଧିଆ ପଲରେ ବଢ଼ିବାକୁ ଲାଗିଲା, ଗଧିଆଂକ ପରି ଚାରି ପାଦରେ ଚାଲବୁଲ କଲା ଏବଂ ସେହିପରି ସ୍ୱରଣିଦ କଲା । କଂଚା ମାଂସ ଖାଇ ଜଂଗଲରେ ଜୀବନ ଯାପନ କଲା । ଏହାର ବାର ତେର ବର୍ଷ ପରେ କେହିଜଣେ ଶିକାରୀ ତାକୁ ଦେଖି ଜଂଗଲରୁ ନେଇ ଆସି ଲକ୍ଷ୍ନୌରେ ଏକ ବଡ଼ ହାସପାତାଳରେ ରଖାଇଲେ । ବହୁ ବିଶେଷଜ୍ଞ ତାକୁ ପୁନଃମନୁଷ୍ୟ କରିବାକୁ ଚେଷ୍ଟା କଲେ । ମାତ୍ର କିଛି ହେଲା ନାହିଁ । ତାର ବୁଦ୍ଧି ବୃତ୍ତି ଫେରିଲା ନାହିଁ କି ଭାଷା ଫୁଟିଲା ନାହିଁ । ଶେଷରେ ପରିବର୍ତ୍ତିତ ଅବସ୍ଥା ସହିତ ନିଜକୁ ଖାପ ଖୁଆଇ ନପାରି ସେ ଦୁଇ ବର୍ଷ ପରେ ମରିଗଲା··· ! )·ରୁମାନିଆରେ ମଧ୍ୟ ଅନୁରୂପ ଘଟନା ଘଟିଥିବାର ଜଣାଯାଏ । *

ମଣିଷ ଯେଉଁଦିନ ପ୍ରକୃତି ସହିତ ଦ୍ୱଂଦ୍ୱରେ ରତ ହୋଇ ଏବଂ ଶ୍ରମକୁ ଲଘୁ କରିବା ପାଇଁ ହତିଆର ବ୍ୟବହାର କରିବାକୁ ଶିଖିଲା, ନିଜେ ଉତ୍ପାଦନ କଲା, ସେହି-ଦିନ ଆରଂଭ ହେଲା ମଣିଷ ହିସାବରେ ତାର ପ୍ରକୃତ ଇତିହାସ । ତେଣୁ ମଣିଷକୁ tool-using animal ବୋଲି ଯେଉଁ ସମାଜତତ୍ତ୍ୱବିତ୍‌ମାନେ କହଂନ୍ତି, ସେମାନଂକ କଥାରେ ଐତିହାସିକ ସତ୍ୟତା ଅଛି । ମଣିଷର ଶ୍ରମ ସଂକ୍ରାଂତ ହତିଆର ଦେଖି ଇତିହାସ ରଚନା ପ୍ରଣାଳୀର ଯଥାର୍ଥତା ମଧ୍ୟ ଏଇଠି ।

କୌଣସି ବସ୍ତୁର ଗୁଣର ଧାରଣା କରିବାକୁ ହେଲେ ତାକୁ ତାର ପରିବେଶ ମଧ୍ୟରେ ତାର ବିଭିନ୍ନ ଓ ବିଚିତ୍ର ସଂପର୍କରେ ଦେଖିବାକୁ ହୁଏ । ଖାଲି ବିଚିତ୍ର ସଂପର୍କ ଦେଖି କଂରୁ ବାସ୍ତବ ଜ୍ଞାନ ଲାଭ ହୁଏନାହିଁ । ଅଭିଜ୍ଞତା ପାଖରେ ଅଭିଜ୍ଞତା ସଜାଇ

*Materialist Interpretation of Reality—Progress Press, Moscow.*

ବାସ୍ତବର ଜ୍ଞାନ ବଢ଼ି ଉଠେ ନାହିଁ । କର୍ମର ଛଂଦରେ ଗ୍ରଥିତ ହୋଇଆସିଲେ ଅଭିଜ୍ଞତା ଠିକ୍ ଭାବେ ରୂପ ପାଏ, ପ୍ରାଣବଂତ ହୋଇ ଉଠେ । ଆମେ ଜାଣୁ କର୍ମକୁ ସହଜ ଓ ସାବଲୀଳ କରେ ଛଂଦ । ଛଂଦୋବଦ୍ଧ କର୍ମଶକ୍ତିର ଅପଚୟ ଘଟେ ନାହିଁ । ମଣିଷ ବି ତା ଭିତରେ ସମାହିତ ହୋଇ ନିଜକୁ, ନିଜର ଶକ୍ତିକୁ, ନିଜର ସମ୍ଭାବ୍ୟତାକୁ ଉପଲବ୍ଧି କରିପାରେ । ଛଂଦର ଧର୍ମ ହେଲା ଶକ୍ତିକୁ ସଂଯତ, ସଂହତ, ଏକାଗ୍ର କରି ତୋଳିବା । ଏଥିପାଇଁ ପୂର୍ବେ ମଣିଷ ଯେତେବେଳେ ପଶୁ ସ୍ତରରେ ଥିଲା, ସେତେ-ବେଳେ ଯେଉଁ କର୍ମ ଥିଲା ବଂଚିବାର ଅଂଧ ଆବେଗର ପ୍ରକାଶ, ସମବେତ ମଣିଷର କର୍ମର ଛଂଦରେ ପଡ଼ି, ତାହା ଚେତନାର ବସ୍ତୁ ହୋଇ ଉଠେ—ତାର ଉଦ୍ଦେଶ୍ୟ, ତାର ଉପକରଣ ଧୀରେ ଧୀରେ ସୁସ୍ପଷ୍ଟ ହୋଇଉଠେ, 'ଧାରଣା'ର ଜନ୍ମ ହୁଏ । ଏହି ପରି ଭାବରେ ଅଭିଜ୍ଞତା ସଂଚୟ ହୁଏ, ଭାଷା ଫୁଟେ, ବୁଦ୍ଧିର-ଶକ୍ତିର ଉଦ୍‌ବୋଧନ ହୁଏ । ଆମର ଆଦିମ ପୂର୍ବପୁରୁଷଂକ ଏକଲକ୍ଷ୍ୟ ସମବେତ ଶ୍ରମ ମଧ୍ୟରୁହିଁ ଆସିଛି ଆମର ପ୍ରଥମ ଭାଷା, ଆମର ବୁଦ୍ଧିଶକ୍ତି ଏବଂ ପରେ ଶିଳ୍ପ ଓ ସାହିତ୍ୟ । ※[୧]

ତେଣୁ ସାହିତ୍ୟର ମୂଳଉତ୍ସ ହେଲା ମଣିଷର ସାମାଜିକ ଜୀବନ, ଯାହା ବ୍ୟକ୍ତି ଚେତନାକୁ ପ୍ରସାରିତ କରିଥାଏ, ଏକ ଅପରିବର୍ତ୍ତନୀୟ ସାମାଜିକ ଚେତନା ସ୍ତରକୁ ଅର୍ଥାତ୍ ମଗ୍ନଚୈତନ୍ୟର ଗଭୀରତା ମଧ୍ୟକୁ ଟାଣି ନେଇ ତାକୁ ବ୍ୟାପକତର, ପୂର୍ଣ୍ଣତର ଏବଂ ଅଧିକ ପ୍ରାଣବଂତ କରିଥାଏ । ବ୍ୟକ୍ତିମାନସ କଦାପି ବିଚ୍ଛିନ୍ନ ଅବସ୍ଥାରେ ନିଜକୁ ସଂପୂର୍ଣ୍ଣ ରୂପେ ଚିହ୍ନି ପାରିବ ନାହିଁ, ପ୍ରକାଶ କରିବା ତ ଦୂରର କଥା ।

"ମଣିଷ ସଂଗରେ ଦର୍ପଣ ନେଇ ଦୁନିଆକୁ ଆସେ ନାହିଁ । ଫିକ୍‌ଟେସଂଥୀ ଦାର୍ଶନିକଂକ ପରି ସେ କହିପାରେନା ଯେ 'ମୁଁ ହେଉଛି ମୁଁ' । ନିଜକୁ ତାକୁ ଚିହ୍ନିବାକୁ ହୁଏ ଅନ୍ୟ ମଧ୍ୟରେ ନିଜର ପ୍ରତିରୂପ ଦେଖି । 'ପିଟର୍' ନାମକ ଲୋକଟି ମଣିଷ ହିସାବରେ ନିଜ ସଂଗରେ ସଂବଂଧଟା ବୁଝିନିଏ ତାର ସମଜାତୀୟ 'ପଲ୍' ଲୋକଟି ସଂଗରେ ନିଜର ସଂବଂଧ ବିଷୟରେ ସଜାଗ ହୋଇ । ପଲ୍ ସେତେବେଳେ ତାର ରକ୍ତମାଂସ ସତ୍ତ୍ୱେ, ତାର ପଲୀୟ ଦୈହିକତା ସତ୍ତ୍ୱେ ପିଟର ପାଖରେ ଗୋଟା ମଣିଷ ଜାତିଟାର ପ୍ରାତିଭାସିକ ରୂପ ନେଇ phenomenal ରୂପ ନେଇ ଦେଖାଦିଏ ।" ※

ପଲକୁ ଦେଖି ପିଟର୍ ଯିନା ନିଜକୁ ପଲ୍‌ର ସମଜାତୀୟ ବୋଲି ଚିହ୍ନିଲା, କିଂବୁ ସମାଜ ମଧ୍ୟରେ ପ୍ରକୃତ ମଧ୍ୟରେ ସେ କିଏ, କମିତ ଜାଣିବ ? ମଣିଷକୁ ତାର

୧ । 'ଶିଳ୍ପଦର୍ଶନର ଭୂମିକା'—ଶୁଭେଂଦୁ ଘୋଷ

※ (କାର୍ଲ ମାର୍କସ୍— କ୍ୟାପିଟାଲ, ପ୍ରଥମ ଖଂଡ, ପ୍ରଥମ ପରିଚ୍ଛେଦର ପାଦଟୀକା)

ସାମାଜିକ, ତାର ପ୍ରାକୃତିକ ସତ୍ତାର ପରିଚୟ ନେବାକୁ ହେବ ସମାଜ ମଧ୍ୟରେ ନିଜକୁ ଦେଖି । ପ୍ରକୃତି ଓ ସମାଜ ସଂଗରେ ଘନିଷ୍ଠ ସଂପର୍କରେ ଆସି ମଣିଷ ମନରେ ଯେଉଁ 'ସଜାଗତା' ଜାତ ହୁଏ, ତାହା ଖାଲି ଏ ସବୁର ଅସ୍ତିତ୍ୱବ । ପ୍ରକୃତି ଓ ସମାଜ ସଂଗରେ ଏକାତ୍ମ ହୋଇ ମଣିଷ ଭାବେ 'ସେ ଅଛି' । ନିଜର ବିଶିଷ୍ଟ ଉପଲବ୍‌ଧି ପାଏ । ଉପଲବ୍‌ଧି ସ୍ୱୀକୃତି ଭୁହେଁ— ପ୍ରମାଣର ଅପେକ୍ଷା ରଖେ ନାହିଁ । ମଣିଷ ନିଜ ସତ୍ତାର ସ୍ୱୀକୃତି ରଖିଯାଏ ଶିଳ୍ପରେ, ସାହିତ୍ୟରେ । ଷ୍ଟିଫେନ୍ ସ୍ପେଂଡାର ଏହି ଉପଲବ୍‌ଧିକୁ କହିଛଂତି, awareness deeper than consciousness ଚୈତନ୍ୟଠାରୁ ଗଭୀର ଏକ ଅସ୍ତିବୋଧ । ଚୈତନ୍ୟର ବସ୍ତୁ ପ୍ରମାଣର ଅପେକ୍ଷା ରଖିପାରେ, ଚୈତନ୍ୟଠାରୁ ଯାହା ଗଭୀର, ତାର ସତ୍ୟତା ପ୍ରମାଣିତ ହୁଏ ପ୍ରକାଶ ହୋଇ । ଶିଳ୍ପ ବା ସାହିତ୍ୟର ସାର୍ଥକତା ମଣିଷକୁ ନିଜ ପାଖରେ ପ୍ରକାଶ କରିବା ।

ପୂର୍ବେ କହିଛୁଁ ପ୍ରକୃତି ବା ବାସ୍ତବତା ସଂଗେ ମଣିଷର ଦ୍ୱଂଦ୍ୱର କଥା । ମଣିଷ ପ୍ରକୃତି ବା ବାସ୍ତବତାର ପରିବର୍ତ୍ତନ କରୁ କରୁ ନିଜକୁ ମଧ୍ୟ ପରିବର୍ତ୍ତନ କରି ଚାଲିଛି । କିଂତୁ କିପରି ? ପ୍ରକୃତିକୁ ପୂର୍ଣ୍ଣ ଭାବେ ଜାଣିହିଁ ପ୍ରକୃତିକୁ ଜୟ କରିଯାଏ—ଅଂତଃପ୍ରକୃତିକୁ ଖାଲି ନୁହେଁ, ବହିଃପ୍ରକୃତିକୁ ବି । ଏହି ଜାଣିବା ହେଉଛି ମଣିଷର ନିଜକୁ ଜାଣିବା । ଶିଳ୍ପ ମଣିଷକୁ ଜାଣିବାରେ ଖାଲି ସହାୟକ ହୁଏ ନାହିଁ, ବରଂ ତାର ବର୍ତ୍ତମାନର ସତ୍ତା ପ୍ରସାରୁ—ତାର ଅଂତିମ ପରିଣତି ଆଡ଼କୁ ଆଗେଇବାର ଶକ୍ତି ବଢ଼ାଇ ଦିଏ ।

ଏହି ଆଲୋଚନାରୁ ଆମେ ଦେଖିଲୁ ଶୈଳ୍ପିକ ଉପଲବ୍‌ଧି ପ୍ରାକୃତ ସତ୍ତାର ଜିନିଷ, ସାମାଜିକ ସତ୍ତାର ଜିନିଷ । ଏହା ବ୍ୟକ୍ତି-ଚେତନାଠାରୁ ଗଭୀର । ଏହାର ବସା ଅବଚେତନର ଗଭୀର ଗୁହାରେ ।

## ଆଂଗିକ

ରସ ଆଦିରେ ଅନଂଗ—ସତ୍ତ୍ୱ ସଂବଂଧରେ ଏକ ଜାଗର ଭାବ ମାତ୍ର । ଏହି ରସ ଅବଚେତନ ସ୍ତରରୁ ଯେତେ ମନର ଉପରିଭାଗକୁ ଠେଲି ଆସେ, ସେତେ ତାକୁ ମନର ଅପେକ୍ଷାକୃତ ଉପରିଭାଗର ବସ୍ତୁ—ସ୍ମୃତି ଓ ସଂସ୍କାର ସଂସ୍ପର୍ଶରେ ଆସିବାକୁ ହୁଏ, ସେତେ ତାର ଅଂଗ ଗଢ଼ିଉଠେ । ସ୍ମୃତି ଓ ସଂସ୍କାର ଜଡ଼ଧର୍ମୀ । ରସ ସେମାନଂକ ମଧ୍ୟରେ ବାଟ ଠେଲି ଆସି ସେମାନଂକ ରଂଗରେ କିଛିଟା ରଂଗୀନ୍ ହୋଇଉଠେ । (ଯେମିତି ଆଲୋକ—ତାର ନିଜର ରଂଗ ନାହିଁ । ମାତ୍ର ଇଂଦ୍ରଧନୁ ମଧ୍ୟରେ ତାର ରଂଗ ପ୍ରକଟେ ।) ଉପଲବ୍‌ଧି ହେଉଛି ରସର ବିକାଶରେ ଗୋଟାଏ ଘନୀଭୂତ ଅବସ୍ଥା ।

ମନର ବିଭିନ୍ନ ସ୍ତରରେ ରସର ରଂଗ ନେବାର ଉପାଦାନ ବିଭିନ୍ନ । ଯେପରି ସ୍ୱପ୍ନର ଗୋଟାଏ ସ୍ତରରେ ତାର ଉପାଦାନ ହେଲା ମନୋବିକଳନବିତ୍‌ମାନେ ଯାହାକୁ କହନ୍ତି archetype ବା ଆଦିରୂପ, ସେଟା ଆମର ପରିଚିତ ସାଧାରଣ ଜୀବନର ରୂପ ପରି ନୁହେଁ । ରସ ଏହି ଆଦିରୂପର ସହାୟତାରେ ଆତ୍ମପ୍ରକାଶ କରେ ଖାଁଟି ଉପକଥା ବା ଅତିକଥାରେ (ମିଥ୍‌), ମିଷ୍ଟିକ୍‌ମାନଂକ ରଚନାରେ, ଧର୍ମୀୟ ସାହିତ୍ୟରେ ।

ଅସଲ କଥା ହେଉଛି, ମଗ୍ନଚୈତନ୍ୟ ହିଁ ହେଲା ମଣିଷର ପ୍ରାକୃତ ସତ୍ତାର ଉପଲବ୍‌ଧିର ସ୍ଥାନ । ସେଇଠି ଜାଣିବାହିଁ ହେଲା ପ୍ରକୃତ ଜାଣିବା । ଜୀବନର ପ୍ରାୟ ସଂଦର ଅଣା ଅଭିଜ୍ଞତା ଥାଏ ମଗ୍ନଚୈତନ୍ୟରେ । ମଣିଷର ସାମାଜିକ ଓ ପ୍ରାକୃତିକ ଉପଲବ୍‌ଧିର ପ୍ରାୟ ସବୁତକ ଅଂଶ ଥାଏ ମଗ୍ନଚୈତନ୍ୟରେ । ସେଥିପାଇଁ ମଗ୍ନ-ଚୈତନ୍ୟର ଜିନିଷ ଯେତେବେଳେ ଜାଗ୍ରତ ଚୈତନ୍ୟ ମଧ୍ୟରେ ଆସି ପରିଚିତ ରୂପରେ ଦେଖାଦିଏ, ଆମେ ସେତେବେଳେ ତାକୁ ଚହ୍ନିପାରୁଁ, କଂରୁ ଖାଲି ବୁଦ୍ଧି ଦେଇ ନୁହେଁ, ସମଗ୍ର ସତ୍ତାଦେଇ ଚହ୍ନି ପାରୁଁ । ସେଥିପାଇଁ ପ୍ରକୃଷ୍ଟ ଶିଳ୍ପର ଆବେ-ଦନ ପ୍ରଧାନତଃ ସତ୍ତା ନିକଟରେ ।

ପ୍ରାତ୍ୟହିକ ଜୀବନର ସାଧାରଣ ସଜାଗତାରେ ଅଭ୍ୟାସର ଜଡ଼ତା ବର୍ତ୍ତମାନ । ସଜାଗତା ଯେତେ ବେଶୀ ଗଭୀର ମନର, ସେତେ ତାର ଜଡ଼ତା କମ୍‌, ପ୍ରାଣର ଉଚ୍ଛଳ ଗତି ସେତେ ସେଥିରେ ପରିସ୍ଫୁଟ । ମଣିଷର ଉପଲବ୍‌ଧି ଯେତେ ପ୍ରାକୃତିକ ଓ ସାମାଜିକ ସତ୍ତାଗତ, ସେତେ ସେଟା ଗଭୀର ଓ ବ୍ୟାପକ । ଆମେ ଜାଣୁ ପ୍ରାତ୍ୟହିକ ଜୀବନର ସଜାଗତାରେ ବ୍ୟାବହାରିକ ଜଗତ୍‌ର ବିଧି ନିଷେଧ ପ୍ରବଳ । ଅଭ୍ୟସ୍ତ ବ୍ୟବସ୍ଥା ସେଠାରେ ପ୍ରତି ପଦରେ ସତ୍ତାର ଗତିକୁ ପ୍ରତିହତ କରେ, ସତ୍ତାକୁ ସଂକୁଚିତ କରିଦିଏ । ସେଠି ତଥ୍ୟର ଭିଡ଼ । ଯେତେବେଳେ ତଥ୍ୟ ତତ୍ତ୍ୱ ରୂପ ନିଏ ସମଗ୍ର ଉପ-ଲବ୍‌ଧିରେ, ସେତିକିବେଳେ ତାହା ହୁଏ ସାର୍ଥକ, ଶିଳ୍ପ ବା ସାହିତ୍ୟର ଉପାଦାନ ।

ବିଜ୍ଞାନ ଓ ଶିଳ୍ପର ପ୍ରେରଣା ଓ ଉପଲବ୍‌ଧି ଆସେ ସାମାଜିକ ଉପଲବ୍‌ଧିରୁ । ମଣିଷ ତାର ସମଗ୍ର ସତ୍ତାର ଉପଲବ୍‌ଧିକୁ ବାହ୍ୟିକ ରୂପରେ ସ୍ୱତଃଉତ୍ସାରିତ ଛଂଦରେ ପ୍ରକାଶ କରିପାରିଲେ ହୁଏ ଶିଳ୍ପ, ବିଶ୍ଳେଷଣ କରି ପାରିଲେ ହୁଏ ବିଜ୍ଞାନ ।

ମଣିଷ ଜୀବନ ହେଲା ମଣିଷର ପ୍ରକୃତି ସଙ୍ଗେ ଦ୍ୱଂଦ୍ୱରେ । ଚତ୍‌ ଦ୍ୱାରା ସେ ପ୍ରକୃତିଠାରୁ ବିଶେଷିତ—ସତ୍‌ଠାରୁ ଏଠାରେ ସେ ବିଭିନ୍ନ । ସୁତରାଂ ମଣିଷ ଏବଂ ପ୍ରକୃତିର ଏହି ଦ୍ୱଂଦ୍ୱ ହେଲା ସତ୍‌-ଚତ୍‌ ମଧ୍ୟରେ ଦ୍ୱଂଦ୍ୱ । ଏହି ଦ୍ୱଂଦ୍ୱ ମଧ୍ୟରେ ମଣିଷ

କ୍ରମାଗତ ବହିଃପ୍ରକୃତିର ପରିବର୍ତ୍ତନ କରି ଚାଲି ଚାଲି ନିଜକୁ, ନିଜର ଅନ୍ତଃପ୍ରକୃତିକୁ ପରିବର୍ତ୍ତନ କରି ଚାଲିଛି । ମଣିଷ ଦିନେ ଥିଲା ଅନ୍ଧ ପ୍ରକୃତି ଦ୍ୱାରା ପରିଚାଳିତ । ବର୍ତ୍ତମାନ ପ୍ରକୃତି ସହିତ ଦ୍ୱନ୍ଦ୍ୱ ଫଳରେ ସେ ଚାଲିଛି ପୁଣି ସଚେତନ ଭାବରେ ସ୍ୱାଭାବିକ ହେବାକୁ । ମଣିଷ ସଭ୍ୟତା ହେଉଛି ଏହି ପୁନଃସ୍ୱାଭାବିକ ହେବାର ପନ୍ଥା । ଶିଳ୍ପ ହେଲା ବିଜ୍ଞାନ ପରି ମାନବ ସଭ୍ୟତାର ଗୋଟାଏ ଦିଗ । ସତ୍ ଓ ଚିତ୍, ବିଷୟ ଓ ବିଷୟୀ ଦ୍ୱନ୍ଦ୍ୱରୁ ରସର ଉଦ୍ଭବ । ଏହି ରସ ହେଉଛି ଶିଳ୍ପର ପ୍ରାଣବସ୍ତୁ—ବିଜ୍ଞାନର ମଧ୍ୟ । ଏହି ରସର ସ୍ୱତଃଉତ୍ସାରିତ ରୂପ, ସମଗ୍ର ସତ୍ତାର ବରଣୀୟ ରୂପ ହେଲା ଶିଳ୍ପ, ଆଉ ବହିଃଚେତନାର ଅଧିଗତ ରୂପ ବା ବୁଦ୍ଧିଗ୍ରାହ୍ୟ ରୂପ ହେଲା ବିଜ୍ଞାନ । କିନ୍ତୁ ଉଭୟର ଉତ୍ସ ଏକ ସାମାଜିକ ଉପଲବ୍ଧି ।

ଆମେ ଜାଣୁ ନିତିଦିନିଆ ଜଗତର ରୀତି ଆମର ସହଜ ଉପଲବ୍ଧିକୁ ପଦେ ପଦେ କ୍ଷୁଣ୍ଣ କରେ । ଆଧୁନିକ ମନୋବିଜ୍ଞାନୀମାନେ ଦେଖାଇ ଦେଇଛନ୍ତି ଅବଚେତନ ବା ନିର୍ଜ୍ଞାନ ମନର ଯେତେ ଗଭୀର ସ୍ତରକୁ ଆମେ ଯାଇପାରୁଁ, ଏହିସବୁ ଶକ୍ତି-ସଙ୍କୋଚକ ବିଧି-ନିଷେଧ ଏବଂ ବ୍ୟାବହାରିକ ଜଗତର ରୀତି-ନୀତି ସେତେ ଅର୍ଥହୀନ ହୋଇପଡ଼େ, ଜଡ଼ତା ସେତେ କମିଯାଏ । (୧)

ବସ୍ତୁତଃ ମନର ବିଭିନ୍ନ ସ୍ତରରେ ବାସ୍ତବକୁ ଦେଖିବାର ଭଙ୍ଗୀହିଁ ବିଭିନ୍ନ ! ଏକ ମନର ଏକ ସ୍ତରର ଉପଲବ୍ଧିକୁ ଅନ୍ୟ ମନରେ ଏହି ସ୍ତରରେ ସଞ୍ଚରିତ ଓ ସଂକ୍ରମିତ କରେ ଶିଳ୍ପ । ଆମେ ପ୍ରାୟ ସବୁ ସମୟରେ ଥାଉଁ ପ୍ରାତ୍ୟହିକ ଜୀବନର ସାଧାରଣ ସଜାଗତାର ସ୍ତରରେ । ତେଣୁ ବ୍ୟାବହାରିକ ଜଗତର ବିଧି-ନିଷେଧ, କଡ଼ା ନୀତିନିୟମ ଓ ଜଡ଼ତା କାଟି ଉପଲବ୍ଧି ଅକ୍ଷତ ଭାବରେ ଅନ୍ୟର ଚିତ୍ତରେ ପହଂଚିବ କିପରି ? ପ୍ରତି ଦିନର ମନକୁ ପ୍ରଥମେ ଯଥାଯୋଗ୍ୟ ଗଭୀରତା ମଧ୍ୟରେ ଅବରୋହଣ କରାଇବା ଦରକାର । ତାପରେହିଁ ସଂକ୍ରମଣ ସମ୍ଭବ ।

ରସ ଶିଳ୍ପରେ କି ଭାବରେ ରୂପାୟିତ ହେବ, ତାହା ନିର୍ଣ୍ଣୀତ ହୁଏ ମନର ସ୍ମୃତି ସଂସ୍କାର ଦ୍ୱାରା । ଏହି ସ୍ମୃତି ଓ ସଂସ୍କାର ଅତୀତ ଉପଲବ୍ଧିର ଜଡ଼ ରୂପ ମାତ୍ର । ନାନା ସ୍ମୃତି ଓ ସଂସ୍କାରର ସଂସ୍ପର୍ଶରେ ଆସି ସେମାନଙ୍କୁ ଗ୍ରଂଥି ନେଇ, ମିଶେଇ ନେଇ, ରସ ତାର ଅଙ୍ଗ ଗଢ଼ି ନିଏ । ବ୍ୟକ୍ତି ସତ୍ତା ପରି ସାମାଜିକ ଓ ପ୍ରାକୃତିକ ସତ୍ତାର ମଧ୍ୟ ସ୍ୱତନ୍ତ୍ର ସ୍ମୃତି-ସଂସ୍କାର ରହିଛି । ଏକ ଏକ ବିଶେଷ ରସ ସଙ୍ଗରେ ଯେତେବେଳେ ଏକ ବିଶେଷ ଆଙ୍ଗିକର ସମ୍ପର୍କ ବୈଜ୍ଞାନିକ ପ୍ରଣାଳୀରେ ନିର୍ଣ୍ଣୀତ ହୋଇଯାଏ, ସେତେବେଳେ ସେହି ରସର ପ୍ରକାଶକୁ ସେହି ଆଙ୍ଗିକର ପ୍ରୟୋଗ ସହଜ କରିଦିଏ ।

(୧) "ଶିଳ୍ପ ଦର୍ଶନର ଭୂମିକା" ଦ୍ରଷ୍ଟବ୍ୟ

ଶିଳ୍ପରେ ଆଂଗିକର ପ୍ରୟୋଗର ଅର୍ଥ ହେଉଛି ରସର ଚରମ ବୃଦ୍ଧି ସେହି ରସ ପ୍ରକାଶରେ ତାର ପ୍ରେୟ ସ୍ଫୁଟ-ସଂସ୍କାରର ପ୍ରୟୋଗ । ଭାରତୀୟ ସଂଗୀତର ଦୃଷ୍ଟାଂତ ଏଠାରେ ଦିଆଯାଇପାରେ । ପ୍ରତି ଧ୍ୱନର ମନକୁ ଯଥାଯୋଗ୍ୟ ଗମ୍ଭୀରତାକୁ ଅବରୋହଣ କରାଇବାର ପ୍ରାଥମିକ କାମଟା କରେ ଆଂଗିକ । (୬)

ଏହାହିଁ ହେଉଛି ଆଂଗିକର ପ୍ରକୃତ କାର୍ଯ୍ୟ । ମାତ୍ର ଆଜିକାଲି ବହୁପରୀକ୍ଷା ନିରୀକ୍ଷା ମଧ୍ୟରେ ଆଂଗିକର ଏହି ପ୍ରକୃତ କାର୍ଯ୍ୟଟା ଭୁଲିଯାଇ ତାର ଗୁରୁତ୍ୱଟାକୁ ପ୍ରକୃଷ୍ଟ ଶିଳ୍ପ ବୋଲି ଚଳାଇବାର ଅପଚେଷ୍ଟା ବେଶୀ ଆଖିରେ ପଡ଼େ । ଅନେକ ଶିଳ୍ପୀ ଏହି ଆଂଗିକକୁ ଶିଳ୍ପ ବୋଲି ଜାହିର କରିବାକୁ ମଧ୍ୟ ଚେଷ୍ଟିତ । ସାଧାରଣଭାବେ ସୁପ୍ରତିଷ୍ଠ ଆଂଗିକର ଆଦର୍ଶ ହେଲା—ରସ ଫୁଟାଇବାର ଚେଷ୍ଟା । ଆଂଗିକ ପ୍ରାତ୍ୟହିକ ଜୀବନର ଉପଲବ୍ଧିକୁ ଗଭୀର ସ୍ତରକୁ ନେଇଯିବାର ସୋପାନ ହୋଇ ପାରିଲେ ହିଁ ତାର ସାର୍ଥକତା । ନୂତନ ଆଂଗିକ ଆସେ ରସରେ ନୂତନତ୍ୱ ଆସିଲେ । ରସରେ ନୂତନତ୍ୱ ଫୁଟେ ବାସ୍ତବ ଜୀବନର ଗତିରେ, ସମସ୍ତ ସତ୍ତାର ଉପଲବ୍ଧିରେ ଯେତେବେଳେ ନୂତନତ୍ୱ ଦେଖାଦିଏ । ଅର୍ଥାତ୍ ମଣିଷର ଔତ୍ପାଦିକ ଜୀବନରେ ଗତିଫେର ହେଲେ ତାର ଅଂତଃଜୀବନରେ ମଧ୍ୟ ଗତିଫେର ହୁଏ, ରସରେ ରୂପାଂତର ଘଟେ ଏବଂ ଶିଳ୍ପ ବା ସାହିତ୍ୟରେ ଆଂଗିକର ସାର୍ଥକ ଅଭିନବତ୍ୱ ଅନିର୍ବାର୍ଯ୍ୟ ହୋଇ ଉଠେ ।

ଆଂଗିକ ଯେଉଁଠି ରସାନୁସାରୀ, ସେଠି ତାହା ସାର୍ଥକ ଏବଂ ଶିଳ୍ପର ପରିପୂରକ । ଶିଳ୍ପରେ ଆଂଗିକର ସ୍ୱତଂତ୍ର ଅବଦାନ ସଂବଂଧରେ ଆଧୁନିକ ସମାଲୋଚକମାନେ ବିଭିନ୍ନ ମନ୍ତବ୍ୟ କରନ୍ତି । କାହା କାହା ମତରେ ଆଂଗିକ ମଧ୍ୟ ରସର ସଂସ୍କାର କରିପାରେ । ଫରାସୀ ମାର୍କସ୍‌ବାଦୀ କବି ଆରାଗଁ ଆଂଗିକର ଗୁରୁତ୍ୱ ସ୍ୱୀକାର କରି କହନ୍ତି, କାବ୍ୟର ଇତିହାସ ମୁଖ୍ୟତଃ ତା'ର ଆଂଗିକର ଇତିହାସ । ଯେଉଁମାନେ କହନ୍ତି "କାବ୍ୟ ଏକ ନିର୍ଦ୍ଦିଷ୍ଟ ଧରାବଂଧା ଗତରେ (ବା ଫର୍ମରେ) ଢ଼ାଳିବ, ସେମାନଂକ କଥା ଶୁଣି ମୁଁ ହସିପକାଏ । କବିମାନେ ଗୋଟିଏ ପ୍ରକାର ଖାତରେ ଛକ କାଟି, ଏକ ଦୁଇ ତିନି ଗଣି କାବ୍ୟ ରଚନା କରିବେ—ଏହାଠାରୁ ବଳି ହାସ୍ୟାସ୍ପଦ ଯୁକ୍ତି ଆଉ କ'ଣ ଥାଇପାରେ !" ମାର୍କସ ଫର୍ମ୍ ଉପରେ ବିଶେଷ ଗୁରୁତ୍ୱ ଦେଇ ଏହାକୁ କାବ୍ୟର ଅନନ୍ୟତାର ବାହକ ରୂପେ ସ୍ୱୀକୃତ ଦେଇଛଂତି । "My property is my form. It is my spiritual individuality. The style is the man." ସେ ଅନ୍ୟତ୍ର କହିଛଂତି—

(୬) Ibid

"You admire the delightful variety, the inexhaustible wealth of nature. You do not demand that a rose should have the same scent as violet, and the richest of all the spirit is to be allowed to exist in only one form."

ମାର୍କସ୍ ଶିଳ୍ପରେ ରସ ଓ ଆଙ୍ଗିକର ଅନନ୍ୟତାରେ ବିଶ୍ୱାସୀ । ଏ ସବୁକୁ ଦଳି ମକଚି ଗୋଟାଏ ଛାଂଚରେ ପକାଇବାର ସେ ଆଦୌ ପକ୍ଷପାତୀ ନ ଥିଲେ ।

ମୋଟ କଥା ହେଲା ଆଙ୍ଗିକର କାମ ହେଉଛି ରସାନୁଭୂତିର ଯଥୋପଯୁକ୍ତ ପ୍ରକାଶ । ନଂଦନତତ୍ତ୍ୱବିତ୍ କ୍ରୋଚେଂକ ଭାଷାରେ "It should express an impression, not express an expression."

ଆମ ଭାରତୀୟ ପୂର୍ବାଚାର୍ଯ୍ୟଗଣଂକ ମଧ୍ୟରୁ କେତେକେ ରୀତିକୁ କାବ୍ୟର ଆତ୍ମା ବୋଲି ନିର୍ଣ୍ଣୟ କରି ଯାଇଛଂତି । ଦଂଡୀ, ବାମନାଚାର୍ଯ୍ୟ, ଭାମହ ରୀତି ଉପରେ ପ୍ରାଧାନ୍ୟ ଦେଇଛଂତି । ବାମନାଚାର୍ଯ୍ୟଂକ ମତରେ 'ରୀତିରାତ୍ମା କାବ୍ୟସ୍ୟ' । ଦଂଡୀଂକ ମତରେ ଅଳଂକାର ଓ ଗୁଣ ଉଭୟ କାବ୍ୟଶୋଭାଜନକ । ଅଭିନବ ଗୁପ୍ତ ଆନଂଦବର୍ଦ୍ଧନ (ଧ୍ୱନିକାର) ପ୍ରମୁଖ ରସକୁ ସ୍ୱୀକୃତି ଦେଇଛଂତି । ଉଦ୍‌ଭଟ ରସକୁ ଅପେକ୍ଷାକୃତ ଅଧିକ ପ୍ରାଧାନ୍ୟ ଦେଇ ଯାଇଛଂତି । ବିଶ୍ୱନାଥ କବିରାଜଂକ ମତରେ "ବାକ୍ୟଂ ରସାତ୍ମକ କାବ୍ୟ" । ରଜ ରଜ ଓ ତମ ଗୁଣକୁ ତିରୋହିତ କରି ସତ୍ତ୍ୱ ଉଦ୍ରେକ ଦ୍ୱାରା ଚମତ୍କାରିତା ସୃଷ୍ଟି କରି ହୃଦୟର ବିସ୍ତାର ଘଟାଇପାରେ । ଚମତ୍କାରିତାର ବ୍ୟାଖ୍ୟା ହୃଦୟର ବିସ୍ତାର ବୋଲି ସେ କହିଛଂତି ।

ଏହି ସମସ୍ତ ଆଲୋଚନାର ସମୀକରଣରୁ ଏହାହିଁ ପ୍ରତିପାଦିତ ହେଉଛି ଯେ ରସ ହିଁ ଶିଳ୍ପ ଓ ସାହିତ୍ୟର ପ୍ରାଣବସ୍ତୁ ଏବଂ ଆଙ୍ଗିକ ଏହାର ବହିରଂଗ ଓ ମାଧ୍ୟମ । ବ୍ୟକ୍ତିମାନସ ମଧ୍ୟଦେଇ ରସର ପ୍ରକାଶ ହେଲେ ମଧ୍ୟ ସମାଜମାନସ – ଯାହାର ଆଶ୍ରୟସ୍ଥଳୀ ହେଲା ମୁଖ୍ୟତଃ ମନୁଚୈତନ୍ୟ–ଏହାର ଉତ୍ପତ୍ତିସ୍ଥାନ । ଆଙ୍ଗିକର ଜୋରରେ ଐକ୍ୟ ଆସିପାରେ କିନ୍ତୁ ସଜୀବତା ଫୁଟେ ନାହିଁ, ମଣିଷର ଆଦିମ ପ୍ରାଣଶକ୍ତିର ପରିପ୍ରକାଶ ଘଟେ ନାହିଁ ଯାହା ମହତ୍ ସାହିତ୍ୟର ଗୁଣ ।

ଆଙ୍ଗିକ ପରିବର୍ତ୍ତନଶୀଳ । ତେଣୁ କାବ୍ୟଜିଜ୍ଞାସାରେ କୌଣସି ଆଙ୍ଗିକ ଶେଷ କଥା ହୋଇ ନ ପାରେ । ଅପରିବର୍ତ୍ତନୀୟ ମନୁଚୈତନ୍ୟରୁ ରସାନୁଭୂତିକୁ ଚୈତନ୍ୟର ସ୍ତରକୁ ଆଣି ଶିଳ୍ପରୂପ ଦେବାରେ ବ୍ୟକ୍ତିମାନସ ପକ୍ଷରେ ଆଙ୍ଗିକର ସାହାଯ୍ୟ ଏକାନ୍ତ ଅପରିହାର୍ଯ୍ୟ । □ □ □ □

---

* ଓଡ଼ିଶା ସାହିତ୍ୟ ଏକାଡେମୀ ରଜତ ଜୟଂତୀ ଉତ୍ସବରେ ତା ୧୬-୧୬-୧୯୮୨ରେ ଅନୁଷ୍ଠିତ ସାହିତ୍ୟ ସେମିନାରରେ ଉକ୍ତି-ପ୍ରବଂଧ ରୂପେ ପଠିତ ଓ ଆଲୋଚିତ ଏବଂ ଦିଗଂତ ; ୧୧-୮୨/୧-୮୩ ସଂଖ୍ୟାରେ ପ୍ରକାଶିତ ।

# ସାହିତ୍ୟ ଓ ଯୁଗଧର୍ମ

[ଶିଳ୍ପରେ ମଣିଷ ତାର ନିଜର ପରିଚୟ ପାଏ—ନିଜର ବ୍ୟକ୍ତିତ୍ୱର । ଶିଳ୍ପର ସୌନ୍ଦର୍ଯ୍ୟ ଏଇଠାରେ—ତାର ଆନନ୍ଦର ଉତ୍ସ ଏଇଠାରେ। ଶିଳ୍ପ ଚିହ୍ନାଇଦିଏ, କିନ୍ତୁ ଏକବାରେ ଅପରିଚିତ କିଛିକୁ ନୁହେଁ । ଯାହା ଚିରଦିନ ରହିଯାଇଛି ଆଖିପଟରେ, ତାକୁଇ ଶିଳ୍ପ ଚିହ୍ନାଏ। ଶିଳ୍ପର ସୃଷ୍ଟି ସେଥିପାଇଁ ଯାହା ନ ଥିଲା, ତାକୁ ଗଢ଼ିବା ନୁହେଁ ଯାହାଅଛି, ତା' ଉପରୁ ଯବନିକା କାଢ଼ିଦେବା। ଶିଳ୍ପ ମାନେହିଁ revelation—ଆବିର୍ଭୂତ, ଉଦ୍‌ଘାଟନ]

କେତେକ ସମାଲୋଚକ କହିଅଛନ୍ତି ଯେ ବସ୍ତୁତଃ ଯାହା ଘଟେ ତାହାହିଁ ସତ୍ୟ । କେବଳ ତାର ସାଧାରଣ ପ୍ରତିବେଦନକୁ ନିଃସଂଶୟରେ ଗ୍ରହଣ କରିନେବା ସମ୍ପର୍କରେ ଯାହା ପ୍ରଶ୍ନ ଉଠିପାରେ; ମାତ୍ର ଆମେ ଜାଣୁ ଇନ୍ଦ୍ରିୟର ଅସମ୍ପୂର୍ଣ ସାକ୍ଷ୍ୟହିଁ ସତ୍ୟ-ବିଚାରର ଶେଷ କଥା ନୁହେଁ । ସେଥିପାଇଁ ସମଗ୍ର ସତ୍ତାର ସ୍ୱୀକୃତି ପ୍ରୟୋଜନ । ଶିଳ୍ପ ହେଉଛି ଏହି ଅଖଣ୍ଡ ଜୀବନ ସତ୍ୟର ରୂପାୟନ । ଜୀବନ ଦ୍ୱନ୍ଦ୍ୱରେ ସଙ୍କୁଚିତ ମଣିଷର ସାଧାରଣ ଉପଲବ୍ଧି ମୋଟାମୋଟି ବ୍ୟକ୍ତିଗତ । କିନ୍ତୁ ଏହି ଉପଲବ୍ଧି ଯେତେ ବ୍ୟାପକତା ଓ ଗଭୀରତା ପାଏ, ଯେତେ ତାହା ନିଜକୁ ପ୍ରସାରିତ କରିପାରେ, ସେତେ ତାର ରୂପ ସାମାଜିକ, ଏପରିକି ପ୍ରାକୃତିକ (elemental) ହୋଇଉଠେ । ମଣିଷର ଚିତ୍ତଲୋକ ହେଉଛି ପିଆଜ ପରି । ଠିକ୍ ତା ବି ନୁହେଁ, ତିତର ସ୍ତର ବୋଲି କିଛି ନାହିଁ, କେବଳ ଆମର ବୋଧ-ସୌକର୍ଯ୍ୟ ପାଇଁହିଁ କଳ୍ପିତ ମାତ୍ର । ପିଆଜର ଉପର ଭାଗର ଖୋସା ପିଆଜର ଅସଲ ସତ୍ତା ନୁହେଁ । ଏକବାରେ କେନ୍ଦ୍ରସ୍ଥଳରେ ଥାଏ ପିଆଜର ବୀଜ । ଏହି ବୀଜର ସଜୀବତାହିଁ ପିଆଜର ସଜୀବତା । ମଣିଷର ସାଧାରଣ ଉପଲବ୍ଧି, ନିତିଦିନିଆ ଉପଲବ୍ଧି, ବାହ୍ୟିକ । ତାର ଅନ୍ତଃସ୍ଥଳରେ ଯେଉଁ ସାମାଜିକ ଓ ପ୍ରାକୃତିକ ଉପଲବ୍ଧି ତାରି ସୃଷ୍ଟିରେହିଁ ମାନବାତ୍ମାର ଶ୍ରେଷ୍ଠ ସୃଷ୍ଟି । ଶିଳ୍ପରେ ମଣିଷର ସାମାଜିକ ଓ ପ୍ରାକୃତିକ ସତ୍ତାର ପରିଚୟ ପାଉଁ ।

ସେଥିପାଇଁ ଶିଳ୍ପ ମଣିଷର ପ୍ରସାରତାର ପରିଗୃହକ, ତାର ଆତ୍ମପ୍ରସାଦର ପରିପୋଷକ । ଶିଳ୍ପରେ ମଣିଷ ତାର ବିରାଟତ୍ୱ—ତାର ସାମାଜିକ ଏବଂ ପ୍ରାକୃତିକ ସତ୍ତାକୁ ଉପଲବ୍ଧି କରେ । ଶିଳ୍ପର ସର୍ବୋତ୍ତମ ସାର୍ଥକତା ମଣିଷକୁ ତାର ଏହି ସ୍ୱକୀୟ ଅସୀମତା ମଧ୍ୟରେ ମୁକ୍ତି ଦେଲା ।

ଆମେ କହିଛୁଁ, ଶିଳ୍ପରେ ମଣିଷ ତାର ନିଜର ପରିଚୟ ପାଏ—ନିଜର ବିରାଟତ୍ୱର । ଶିଳ୍ପର ସୌନ୍ଦର୍ଯ୍ୟ ଏଇଠାରେ—ତାର ଆନନ୍ଦର ଉତ୍ସ ଏଇଠାରେ । ଶିଳ୍ପ ଚହ୍ଲାଇ ଦିଏ, କିନ୍ତୁ ଏକବାରେ ଅପରିଚିତ କିଛିକୁ ନୁହେଁ । ଯାହା ଚିରଦିନ ରହିଯାଇଛି ଆଡ଼ସରେ, ତାକୁଇ ଶିଳ୍ପ ଚହ୍ଲାଏ । ଶିଳ୍ପର ସୃଷ୍ଟି ସେଥିପାଇଁ ଯାହା ନ ଥିଲା ତାକୁ ଗଢ଼ିବା ନୁହେଁ, ଯାହା ଅଛି ତା ଉପରୁ ଯବନିକା କାଢ଼ିଦେବା । ଶିଳ୍ପ ମାନେହିଁ Revelation—ଆବିର୍ଭୂତି, ଉଦ୍‌ଘାଟନ । ଆମେ ଅବଶ୍ୟ ଏଠାରେ ପ୍ରକୃତ ଶିଳ୍ପର କଥା କହୁଛୁଁ, ଯାର ଉତ୍ପତ୍ତି ପ୍ରାଣର ଆବେଗରେ, କଳ୍ପନାର ବିଳାସରେ ନୁହେଁ ।

ମଣିଷ ଜୀବନରେ ଦେଖେ ଅନେକ କିଛି, ଶୁଣେ ଅନେକ କିଛି, ଭୋଗ କରେ ଅନେକ କିଛି, କିନ୍ତୁ ଲକ୍ଷ୍ୟ କରେ ଖୁବ୍ କମ୍, ଚେତନାରେ ତୋଳିନିଏ ଆହୁରି କମ । କିନ୍ତୁ ଯାହା ଚେତନାରେ ତୋଳି ନିଏନା ତାହା ଏକାବେଳେକେ ହଜିଯାଏ ନାହିଁ ।[1]

ଭୁଲିଯାଇଥିବା ବହୁ ବିଷୟ ସଙ୍ଗେ ସେହି ସବୁ ଅଧାଦେଖା ବିଷୟ ଅବଚେତନ ମନରେ ସ୍ଥାନ ପାଏ । ସେଥିପାଇଁ ଅନ୍ୟମନସ୍କ ଭାବରେ ବାଟ ଚାଲୁ ଚାଲୁ ହଠାତ୍ ମନେପଡ଼ିଯାଏ ଅନେକ ବିସ୍ମୃତ କଥା । ଆନମନା ହୋଇ ବସି ରହିଥିବା ବେଳେ ହଠାତ୍ ଭାସିଉଠେ ଗୋଟାଏ ପ୍ରଶ୍ନର ଅସମାପ୍ତ ଉତ୍ତରର ବାକିଟିକକ । ଅବଚେତନ ମନ କୌଣସି ଟିକିଏ ଆଲ ପାଇଲେହିଁ ବିସ୍ମୃତକୁ ସଚେତନ ମନକୁ ଠେଲି ଦିଏ ।

ଆଗରୁ କହିଛି ଜୀବନର ଅଧିକାଂଶ ଅଭିଜ୍ଞତାହିଁ ଥାଏ ମଗ୍ନଚୈତନ୍ୟରେ ବା ଅବଚେତନରେ । ଏହି ସମସ୍ତ ଅଭିଜ୍ଞତାର ଉପାଦାନ କଣ ? ମଣିଷର biological ଅଭିଜ୍ଞତା, ଯେଉଁ ସବୁ ସମାଜର କ୍ରମବିକାଶ ମଧ୍ୟରେ ପୁରୁଷକ୍ରମେ ମଣିଷ ଆଜିଯାଏ ଆଗେଇ ଆସିଛି, ସେହି ସବୁ ସମାଜର ଅଭିଜ୍ଞତା; ମଣିଷ ବର୍ତ୍ତମାନ ଯେଉଁ ସମାଜରେ ବାସ କରୁଛି ତାର ଅଭିଜ୍ଞତା——ଏ ସମସ୍ତହିଁ ମଗ୍ନଚୈତନ୍ୟର ଆଶ୍ରିତ । ମନୋବିଜ୍ଞାନୀମାନେ କହନ୍ତି, ମଗ୍ନଚୈତନ୍ୟର ଭାବ-ଚିନ୍ତା ବହିଃଚୈତନ୍ୟ ଅର୍ଥାତ୍ ଜାଗ୍ରତ ମନର ଦ୍ୱନ୍ଦ୍ୱବିକୀର୍ଣ୍ଣ, ସଙ୍କୀର୍ଣ୍ଣ, ସଙ୍କୁଚିତ ସଦାସଶଙ୍କ ମନଟା ଶୋଇପଡ଼ିଲେ ସ୍ୱପ୍ନ ହୋଇଉଠେ । ଦିବାସ୍ୱପ୍ନ ବା ସହଜରେ ଉତ୍ସାରିତ କବିକଳ୍ପନା ମଧ୍ୟ ବହିଃଚୈତନ୍ୟକୁ ଫାଙ୍କି ଦେଇ ମଗ୍ନଚୈତନ୍ୟ ଭିତରକୁ ଉଙ୍କିଝୁଙ୍କି ମାରେ । ମଣିଷର ସମଗ୍ର ସତ୍ତା ଅର୍ଥାତ୍ ତାର ମଗ୍ନଚୈତନ୍ୟ ଓ ବହିଃଚୈତନ୍ୟର ସାମଗ୍ରିକ ରୂପର ପରିଚୟ କେବଳ ଶିଳ୍ପ ମଧ୍ୟରେ ହିଁ ମିଳିଥାଏ ।

ପ୍ରଶ୍ନ ଉଠେ ଶିଳ୍ପ ଓ ସାହିତ୍ୟର ଶ୍ରେଣୀ ଚରିତ୍ର ଅଛି କି ନାହିଁ ? ନିଶ୍ଚୟ ଅଛି । ଶିଳ୍ପୀ ବା ସାହିତ୍ୟିକ ସମସ୍ତେ ସମାଜ ଭିତରେ ହିଁ ବାସ କରନ୍ତି ଏବଂ ସମାଜ ମଧ୍ୟରୁ ହିଁ ସେମାନଙ୍କର ସମସ୍ତ ଅଭିଜ୍ଞତା ଓ ଅନୁଭୂତି ଆହରଣ କରିଥାନ୍ତି । ସୂର୍ଯ୍ୟ ଯେପରି ପୃଥିବୀରୁ ଜଳ ନିଃଶୋଷଣ କରି ତାକୁ ବାଷ୍ପରେ ପରିଣତ କରି ପୁଣି ପୃଥିବୀକୁ ଫେରାଇ ଦିଅନ୍ତି, ସାହିତ୍ୟିକ ବା ଶିଳ୍ପୀ ସେହିପରି ସମାଜଲବ୍ଧ ଉପଲବ୍ଧିକୁ ଶିଳ୍ପ ରସରେ ରସାଣିତ କରି, ଜାରିତ କରି ସେହି ସମାଜକୁ ହିଁ ଫେରାଇ ଦିଅନ୍ତି । ତେଣୁ ଶିଳ୍ପ ବା ସାହିତ୍ୟରେ ବ୍ୟକ୍ତିସତ୍ତାର ଯାହା ଶ୍ରେଣୀସତ୍ତାର

୧ । ଶିଳ୍ପ-ଦର୍ଶନର ଭୂମିକା —ଶୁଭେନ୍ଦୁ ଘୋଷ, ପୁସ୍ତକରୁ ଗୃହୀତ

ଖଂଡିତ ରୂପ, ଗୁପ୍ତ ନିଷ୍ପନ୍ନ ରହିବ ନା ରହିବ । ମାତ୍ର ଶିଳ୍ପୀ ଯେତେ ମଗ୍ନଚୈତନ୍ୟର ଗଭୀରତା ଭିତରକୁ ଅବରୋହଣ କରିବ ସେତେ ତାର ଉପଲବ୍ଧି ସର୍ବମାନବୀୟ ହୋଇ ଉଠିବ, ସେତେ ତାହା ପ୍ରାକୃତିକ ବା elemental ହୋଇ ଉଠିବ ।

ଅନେକେ କହନ୍ତି ଯେ ବହିର୍ଜୀବନର, ପ୍ରାତ୍ୟହିକ ଜୀବନର ଯଥାଯଥ ଚିତ୍ରହିଁ ଅର୍ଥାତ୍, ଫଟୋଗ୍ରାଫ୍‌ହିଁ ହେଉଛି ବାସ୍ତବ ଚିତ୍ର । ପ୍ରଶ୍ନ କରାଯାଇପାରେ ସେ ଚିତ୍ର କଣ 'ଜୀବନ ସତ୍ୟ' ହୋଇପାରେ ? (Ibid)

ଜୋଲା ପ୍ରଭୃତି ସ୍ୱଭାବବାଦୀ ବା Naturalist ମାନେ ଦାବୀ କରିଥିଲେ ଯେ ବସ୍ତୁର ସ୍ୱାଭାବିକ ଚିତ୍ରଣହିଁ ତାର ସ୍ୱରୂପ ଉଦ୍‌ଘାଟନ କରିବା ପକ୍ଷରେ ଯଥେଷ୍ଟ । ଫଟୋଗ୍ରାଫିହିଁ ପ୍ରକୃଷ୍ଟ ଶିଳ୍ପ । ମାତ୍ର ପୂର୍ବରୁ କହିଛୁଁ ମଗ୍ନଚୈତନ୍ୟର ସତ୍ୟ ଓ ବହିଃଚୈତନ୍ୟର ସତ୍ୟ ମଧ୍ୟରେ ପ୍ରଭେଦ ଅନେକ ବେଶୀ । ଶିଳ୍ପର ବିଷୟ ହେଉଛି 'ଯାହା କିଛି ଅଛି'—କେବଳ ବହିଃଚୈତନ୍ୟର ସ୍ୱୀକୃତିରେ ନୁହେଁ, ସମଗ୍ର ସତ୍ତାର ସ୍ୱୀକୃତିରେ ଯାହା ଅଛି । ଏପରିକି ବହିଃଚେତନାର ବିରୁଦ୍ଧକୁ ଉପେକ୍ଷା କରି ମଧ୍ୟ ଶିଳ୍ପ ମାନବ ଚିତ୍ତକୁ ରସସିକ୍ତ କରିପାରେ । ଲୋକ-ସାହିତ୍ୟ ବା ରୂପକଥାର ବାହ୍ୟିକ ଅବାସ୍ତବତା ପଛରେ ତାର ସଜୀବତା ରସିକମାତ୍ରର ହିଁ ଆଦରର ବସ୍ତୁ । ମିଲେଟ୍ ଏହାକୁ ଏଇଭାବରେ ପ୍ରକାଶ କରିଛନ୍ତି । ସୌନ୍ଦର୍ଯ୍ୟ ଶିଳ୍ପର ବିଷୟ ମଧ୍ୟରୁ ଉଦ୍ଭୂତ ନୁହେଁ, ସେହି ବିଷୟକୁ ରୂପଦେବାର ପ୍ରୟୋଜନ-ବେଦନାରୁ ହିଁ ସମ୍ଭୂତ । ତେଣୁ ଶିଳ୍ପ ବିଷୟାଶ୍ରୟୀ ନୁହେଁ, ରସାଶ୍ରୟୀ, ଉପଲବ୍ଧି-ଆଶ୍ରୟୀ । ଶିଳ୍ପ ବାସ୍ତବ ହୁଏ ଗଭୀର ଉପଲବ୍ଧିର ଅଧିକାରରେ । ଉପଲବ୍ଧି ଯେଉଁଠାରେ ସାମାଜିକ ବା ପ୍ରାକୃତିକ, ଶିଳ୍ପ ସେଠାରେ ବାସ୍ତବ । ବିଷୟ-ବର୍ଣ୍ଣନା ଏକାନ୍ତ ଗୌଣ । ପ୍ରାକୃତିକ, ସାମାଜିକ ସତ୍ତା ପୂର୍ଣ୍ଣ, ଅମର, ଅପରାଜେୟ । ବ୍ୟକ୍ତିର ମୃତ୍ୟୁ ଅଛି, କିନ୍ତୁ ସମାଜର ବା ପ୍ରକୃତିର ତ ମୃତ୍ୟୁ ନାହିଁ । ଶିଳ୍ପ ମଧ୍ୟରେ ମୃତ୍ୟୁ ମଧ୍ୟ ଶୋକାବହ ନୁହେଁ । ମଣିଷର ସମସ୍ତ ପରାଜୟ ବିରାଟ ମାନବ-ଜୀବନର ପଟଭୂମିକାରେ ପଡ଼ି, ଛନ୍ଦୋବଦ୍ଧ ହୋଇ ଜୟର ଗୌରବ ପାଏ ।

ଆର୍ଟ ପାଇଁ ଆର୍ଟ କଥାଟା ଯେଉଁପରି ଅଳୀକ, ଆର୍ଟକୁ ପ୍ରୋପାଗାଣ୍ଡା ବୋଲି କହିବା ମଧ୍ୟ ସେହିପରି ଅସଂଗତ । ଅନ୍ୟ ଦିଗରୁ ଦେଖିବାକୁ ଗଲେ ସବୁ ଆର୍ଟହିଁ ପ୍ରୋପାଗାଣ୍ଡା, କାରଣ ତାର ଜନ୍ମ ବ୍ୟକ୍ତିର ମନରୁ ଏବଂ ବ୍ୟକ୍ତିର ଇଚ୍ଛା, ଅନିଚ୍ଛା, ଭଲ ମନ୍ଦର ଧାରଣା, ମତାମତ, ଜୀବନ-ଦର୍ଶନ ଓ ଦୃଷ୍ଟିଭଂଗୀ ସବୁ କିଛିର ପ୍ରତି-ଛାୟା ବା ପ୍ରଭାବ ସେଥିରେ ପ୍ରତିଫଳିତ ହୋଇପାରେ । କିନ୍ତୁ ସବୁ ପ୍ରୋପାଗାଣ୍ଡା ଆର୍ଟ ନୁହେଁ । ମହତ୍ ଶିଳ୍ପ ମାତ୍ରର ଗୋଟିଏ ଗୁଣ ହେଉଛି ଯେ ତାହା ବ୍ୟକ୍ତିକୁ,

ଯେଉଁ ସ୍ତରରେ ସେ ଆଉ ଖାଲି ବ୍ୟକ୍ତିମାତ୍ର ନୁହେଁ, କେବଳ ମଣିଷ; ସେଇ ସ୍ତରରେ ପହଂଚିଇ ଦିଏ, ତାର ନିଗୂଢ଼ ଆଦିମ ପ୍ରାଣଶକ୍ତିକୁ ଉଦ୍‌ବୋଧିତ କରେ । ସେଥିପାଇଁ ଲୁସିନ ବୋଧହୁଏ କହିଥିଲେ —"All art is propaganda but all propaganda is not art" କାରଣ ସବୁକିଛିର ପ୍ରକୃତ ପରିଚୟ ମିଳେ ତାର ସମଗ୍ରତାରେ, ସମଗ୍ର ସତ୍ତାରେ । ଖଂଡିତ ବ୍ୟକ୍ତିସତ୍ତାରେ ନୁହେଁ, ଅଖଂଡ ପ୍ରାକୃତିକ ଓ ସାମାଜିକ ସତ୍ତାରେ—ଯେମିତି 'ବିଂଦୁ' ଭିତରେ ସିଂଧୁର ପରିଚୟ ପ୍ରଚ୍ଛନ୍ନ ଓ ପ୍ରକଟ । ମଣିଷ ଯେତେବେଳେ ବହୁ ମଧ୍ୟରେ ଏକ ଏବଂ 'ଏକ' ମଧ୍ୟରେ 'ବହୁ' ସେତିକିବେଳେ ସେ ନିଜର ପ୍ରକୃତ ପ୍ରତିନିଧି ହୋଇଉଠେ । ମଣିଷର ଏହି ଆତ୍ମସ୍ଥ ଭାବ, ଏହି ସମଗ୍ରସତ୍ତାରେ ସ୍ଥିତି ଭାବହିଁ ଶିଳ୍ପ ସୃଷ୍ଟି କରେ । 'ଶିଳ୍ପର ନୈର୍ବ୍ୟକ୍ତିକତା, ସାମଗ୍ରିକତା ଶିଳ୍ପୀର ସମଗ୍ର ସତ୍ତାଠୁଁହିଁ ଆବିର୍ଭୂତ ହୁଏ । ଶିଳ୍ପର ବିଷୟବସ୍ତୁ ଜୀବନସ୍ରୋତର ଉପଲବ୍ଧି । ଜୀବନ ସ୍ରୋତର ଉପଲବ୍ଧିଠାରୁ ମଣିଷର ଏକାଂତ ନିଜସ୍ୱ ଆଉ କଣ ହୋଇପାରେ । ଶିଳ୍ପ ଶିଳ୍ପୀର ଏକାଂତ ନିଜସ୍ୱ ନ ହୋଇ ପାରେନା । ଏକାଂତ ନିଜସ୍ୱ କିଂତୁ ଏକାଂତ ସାମଗ୍ରିକ' । (ibid)

ଏହି ଜୀବନସ୍ରୋତ କିଂତୁ ଚିର ପ୍ରବହମାନ । ଏହାର ରୂପାଂତର ଘଟୁଛି ଏବଂ ଶିଳ୍ପ ସେହି ରୂପାଂତରର ଧାରକ । ସେଥିପାଇଁ ଟଲଷ୍ଟୟ କହିଥିଲେ ସାହିତ୍ୟ ବିପ୍ଳବର ଦର୍ପଣ (mirror of revolution) । ରୂପାଂତରର ପ୍ରକାଶ ଘଟେ ବିପ୍ଳବ ମଧ୍ୟରେ । ଏଥିରେ କଣ ସ୍ୱୀକୃତ ହେଉ ନାହିଁ ଯେ ବ୍ୟାପକ ଅନୁଭୂତିର ସାର୍ଥକ ଅଭିବ୍ୟକ୍ତି ସାହିତ୍ୟକୁ ତାର ଚରମ ମୂଲ୍ୟ ଦିଏ ।

ନିଖିଳ ଭାରତ ପ୍ରଗତି-ଲେଖକ ସଂଘର ପ୍ରଥମ ଅଧିବେଶନର ସଭାପତି ମୁନ୍‌ସୀ ପ୍ରେମଚାଂଦ ଯେଉଁ ଅଭିଭାଷଣ ଦେଇଥିଲେ ସେଥିରେ ପ୍ରଗତି-ସାହିତ୍ୟର ଏକ ସଜ୍ଞାର ଇଂଗିତ ମିଳେ । ତାର ଗୋଟିଏ ସ୍ଥାନରେ ଅଛି ଭାବାବେଗପୂର୍ଣ୍ଣ ସୁକୁମାର ସାହିତ୍ୟ ସୃଷ୍ଟିନିମନ୍ତେ ସମସ୍ତ ନଷ୍ଟ କରି ଭଳି ପର୍ଯ୍ୟାପ୍ତ ଅବକାଶ ଆମର ନାହିଁ । ଆମ ପାଖରେ ସେହି କଳା-ସୃଷ୍ଟି ହିଁ କାମ୍ୟ ଯାହା ଗମ୍ଭୀର, ଯାହା କର୍ମର ପ୍ରେରଣା ଦିଏ । ଏହାର ଅମର୍ଥ ହେଲା ପ୍ରଗତି-ସାହିତ୍ୟ ମୋଟାମୋଟି ଭାବରେ ପ୍ରୋପାଗାଂଡାହିଁ ହେବ । ସାହିତ୍ୟର ଯୁଗଧର୍ମ ଯାହା ହେଉ ନା କାହିଁକି ଏହା ଅନସ୍ୱୀକାର୍ଯ୍ୟ ଯେ ତାହା ମୂଳତଃ ବ୍ୟକ୍ତିକ ଅନୁଭୂତିର କାବ୍ୟିକ ଅନୁଭୂତିରେ ରୂପାଂତର ହେବା ଦ୍ୱାରା ହିଁ ସୃଷ୍ଟି ହୋଇଥାଏ । ଏହି କାବ୍ୟିକ ଅନୁଭୂତିର ଅନ୍ୟନାମ ହେଲା ସାମଗ୍ରିକ ଅନୁଭୂତି ।

ମାର୍କିନ୍ ସମାଲୋଚକ J. T. Ferrel ପ୍ରୋପାଗାଂଡାର ଯେଉଁ ସଜ୍ଞା ଦେଇଛଂତି ତାହା ହେଲା "a method of conventionalising and

epitomising thought and policy"। ସଜ୍ଞାଟାକୁ ମାନୁଁ ବା ନ ମାନୁଁ ଏହା ସତ୍ୟ ଯେ ପ୍ରୋପାଗାଣ୍ଡା ପଛରେ ଥାଏ ସଚେତନ ମନର ବହୁ ଚିନ୍ତା, ବହୁ ପ୍ରତ୍ୟୟ, ବହୁ ଯୁକ୍ତିତର୍କ। କିନ୍ତୁ ନନ୍ଦନଶାସ୍ତ୍ର ଅନୁସାରେ ସାହିତ୍ୟ ହେଉଛି ସ୍ୱତଃଉତ୍ସାରିତ ରସାନୁଭୂତି, ସାହିତ୍ୟିକ ତାକୁ ରୂପାୟିତ କରିଛି। Art is the expression of an impression not the expression of an expression (କ୍ରୋଚେ)। ଚାରୁକଳା ହେଉଛି ଅନୁଭୂତିର ଅଭିବ୍ୟଞ୍ଜନା, ରୂପାୟିତର ନୁହେଁ। ଅବଶ୍ୟ ଯାହା ରୂପାୟିତ ତାର ମଧ୍ୟ ପୁନଃରୂପାୟନ ହୋଇପାରେ। ମାତ୍ର ତାହା ଚିତ୍ତରସର ଜାରକରେ ଦ୍ରବୀଭୂତ ହୋଇ ଆସିବା ପ୍ରୟୋଜନ। କାର୍ଯ୍ୟତଃ ଚାରୁକଳାର ରାଜ୍ୟକୁ ପ୍ରବେଶ କରିବା ପୂର୍ବରୁ ପ୍ରୋପାଗାଣ୍ଡାକୁ ବିଦେହୀ ହୋଇ ରସୋପଲବ୍ଧିରେ ପରିଣତ ହେବାକୁ ହେବ, ତାର 'ପ୍ରୋପାଗାଣ୍ଡାତ୍ୱ'କୁ ହରାଇବାକୁ ହେବ। ମନୋବିକଳନବିତ୍ Yung ସେଥିପାଇଁ କହିଛନ୍ତି ମହତ୍ ଶିଳ୍ପ ଏଇଟା କର ସେଇଟା କର କହେ ନାହିଁ। ତାହା ଯାହା କହେ ତାହା ତାର ଶିଳ୍ପ ସୃଷ୍ଟିରୁ ହିଁ ସ୍ୱତଃଉତ୍ସାରିତ ହୋଇଥାଏ। ଏହା ଏକପ୍ରକାର ସ୍ୱପ୍ନଧର୍ମୀ। ମାତ୍ର ସେ ସ୍ୱପ୍ନ ବାସ୍ତବତାର ଉପଲବ୍ଧିରହିଁ ଏକ ଶିଳ୍ପରୂପ। ଶିଳ୍ପ ଯେ କର୍ମପ୍ରେରଣା ଦିଏ ନାହିଁ ତାହା ନୁହେଁ। ମାତ୍ର ପ୍ରତ୍ୟକ୍ଷ ଭାବରେ ନୁହେଁ। କର୍ମ-ପ୍ରେରଣା ଦେବା ତାର ପ୍ରତ୍ୟକ୍ଷ ଉଦ୍ଦେଶ୍ୟ ନୁହେଁ। ତେଣୁ ସାହିତ୍ୟକୁ ପ୍ରଗତିର ବାହନରୂପେ ବ୍ୟବହାର କରିବାକୁ ଗଲେ ହିଁ ତାର ମହତ୍ତ୍ୱ କ୍ଷୁର୍ଣ୍ଣ ହେବ। ସେହିପରି ଅନ୍ୟଦିଗରେ ଆର୍ଟପାଇଁ ଆର୍ଟର ସୃଷ୍ଟି ସାହିତ୍ୟର ସାମଗ୍ରିକତା ଓ ବ୍ୟାପକ ବସ୍ତୁତକୁ ବିକୃତ ଓ ସଙ୍କୀର୍ଣ୍ଣ କରେ, ସାହିତ୍ୟକୁ ତାର ବିଶାଳ ସାମାଜିକ ପଟ୍ଟଭୂମିକାରୁ ବିଚ୍ଛିନ୍ନ କରି ବ୍ୟକ୍ତିକେନ୍ଦ୍ରିକ କରେ, ସାହିତ୍ୟର ଯୁଗଧର୍ମ ଯେତେବେଳେ ଜୀବନର ମହାସ୍ରୋତର ପଟ୍ଟଭୂମିକାରେ ପଡ଼ି ସାମାଜିକ ବା ପ୍ରାକୃତିକ ଉପଲବ୍ଧିର ପରିସର ଲାଭ କରେ ସେତିକିବେଳେ ତାହା ହୁଏ କାଳୋତ୍ତୀର୍ଣ୍ଣ, ସାର୍ଥକ ଏବଂ ସର୍ବମାନବୀୟ। ସାହିତ୍ୟର ବିବକ୍ଷିତ ସହିତ ତାର ପ୍ରକାଶଭଙ୍ଗୀ ବା ଆଙ୍ଗିକର ସଂପୂର୍ଣ୍ଣ ଐକ୍ୟ ଓ ସମନ୍ୱୟ ଫଳରେ ସାହିତ୍ୟ ଏହି ପର୍ଯ୍ୟାୟରେ ପହଞ୍ଚିପାରେ ଏବଂ ପ୍ରକୃତ ସାର୍ଥକତା ଲାଭ କରିପାରେ। (Ibid) □ □ □ □

ଆଧୁନିକ ସାହିତ୍ୟ ବହୁ ସଂକଟ ମଧ୍ୟ ଦେଇ ଗତି କରୁଛି । ଏଥିରୁ ସେ କେବେ ଉଦ୍ଧାର ପାଇବ ସେ ବିଷୟରେ ବହୁ ବ୍ୟକ୍ତି ବହୁ ଦିଗରୁ ଚିନ୍ତା କରୁଛନ୍ତି । ଯେପରି ଦେଖାଯାଉଛି, ସାହିତ୍ୟ କ୍ରମେ ଜୀବନର ମହାସ୍ରୋତରୁ ବିଚ୍ଛିନ୍ନ ହୋଇପଡ଼ିଲାଣି । ସାହିତ୍ୟ ଆଜି ସମାଜ-ଜୀବନର ପ୍ରତିନିଧିତ୍ୱ କରୁନାହିଁ । ଅତ୍ୟଧିକ ବ୍ୟକ୍ତିକେନ୍ଦ୍ରିକତା ବୋଧହୁଏ ଏହାର ଅନ୍ୟତମ କାରଣ । ଯେଉଁମାନେ ଆଜି ସାହିତ୍ୟ ସୃଷ୍ଟି କରୁଛନ୍ତି, ସେମାନେ ସାଧାରଣ ଜୀବନଠୁ ଶୋଚନୀୟ ଭାବରେ ବିଚ୍ଛିନ୍ନ ଜଣାଯାଏ । ସେମାନଙ୍କର ଜଗତ ଏକ ବିଚିତ୍ର ଖଣ୍ଡିତ ଜଗତ । ଏହି ଜଗତକୁ ସମାଜ ନିଜର ବୋଲି ଗ୍ରହଣ କରିପାରୁନାହିଁ । ଫଳରେ ଆଧୁନିକ ସାହିତ୍ୟ ପ୍ରଶସ୍ତ ଜନପଥ ହରାଇ ଏକ ଅନ୍ଧଗଳି ଭିତରେ ପ୍ରବେଶ କରିଛି । ଏଥିପାଇଁ ଅବଶ୍ୟ କେବଳ ସାହିତ୍ୟିକଙ୍କୁ ଦୋଷ ଦିଆଯାଇ ନ ପାରେ । ଆଧୁନିକ ଚେତନା ନାନା ବିଡ଼ମ୍ବନା ଏବଂ ଖଣ୍ଡିତ ଅଭିଜ୍ଞତା ଓ ଅନୁଭୂତିର ସମଷ୍ଟି । ଏହି ଚେତନା ସୃଷ୍ଟି କରିଛି ସ୍ରଷ୍ଟାର ପରିବେଶ ଓ ରୂଢ଼ ବାସ୍ତବତା । ଏହି ବାସ୍ତବତା ପାଇଁ ସାହିତ୍ୟିକ ଦାୟୀ ନୁହେଁ । ସେ ଏହାକୁ ଉତ୍ତରାଧିକାର ସୂତ୍ରରେ ପାଇଛି ମାତ୍ର । ଏହା ତାର ଅଦୃଷ୍ଟ ।

ବାସ୍ତବିକ୍ ଆଧୁନିକତା କହିଲେ କଣ ବୁଝାଏ, ତାର କୌଣସି ସଠିକ ସଂଜ୍ଞା ଏ ପର୍ଯ୍ୟନ୍ତ ନିର୍ଣ୍ଣିତ ହୋଇନାହିଁ । କେହି କେହି ଏହାକୁ ଯନ୍ତ୍ରୀକରଣ (industriali-sation) ଏବଂ ନଗରୀକରଣ (urbanisation) ସଂଗେ ସମାନ (equate) କରିଥାନ୍ତି । କେହି କେହି ପୁଣି କହନ୍ତି ଯେ ଏହା ପାଶ୍ଚାତ୍ୟୀକରଣ (westerni-sation) ସଂଗେ ସମତୁଲ । ଯନ୍ତ୍ରୀକରଣ ଏବଂ ତହିଁର ଅନିବାର୍ଯ୍ୟ ପରିଣାମ ନଗରୀକରଣ ସଂଗେ ଯଦି ଆଧୁନିକତାର ସମୀକରଣ କରାଯାଏ, ତେବେ ବୈଜ୍ଞାନିକ କୌଶଳ ଓ ପ୍ରୟୋଗବିଦ୍ୟାରେ ସର୍ବାପେକ୍ଷା ଅଧିକ ଅଗ୍ରସର ନାତ୍ସି ଜର୍ମାନୀକୁ—ଯାହା ବର୍ବରତାର ନାମାନ୍ତର, ସର୍ବାଧୁନିକ ବୋଲି କୁହାଯାଇ ପାରିଥାନ୍ତା । ମାତ୍ର ତାହା କେହି କହୁନାହିଁ—କି କହିବ ନାହିଁ । ତେଣୁ ଆଧୁନିକତାର ଭିତ୍ତି ଓ ଉତ୍ସ ଯେ ମାନବବାଦ—ଏଥିରେ କୌଣସି ସନ୍ଦେହ ଥାଇ ନ ପାରେ ।

ଆଧୁନିକ ମଣିଷ ନାନା ଭାବରେ ଦ୍ୱିଧାବିଭକ୍ତ, ଏକ ଖଣ୍ଡିତ ବ୍ୟକ୍ତିତ୍ୱ । ତାର ଚେତନା ତଥା ବ୍ୟକ୍ତିତ୍ୱର ବିଭାଜନ ପାଇଁ ଦାୟୀ ପ୍ରଚଳିତ ସମାଜବ୍ୟବସ୍ଥା । ସମାଜର ସ୍ୱବିରୋଧ ଓ ଅନ୍ତର୍ଦ୍ୱନ୍ଦ୍ୱ ହିଁ ବ୍ୟକ୍ତିକୁ ସମାଜଠାରୁ ବିଚ୍ଛିନ୍ନ କରିଦେଇଛି । ତେଣୁ ଆଧୁନିକ ମଣିଷ ସବୁଆଡ଼ୁ ବିମୁଖ ହୋଇ, ହୋଇଛି ଏକ ଭୟଙ୍କର ନିଃସଙ୍ଗତାର ଶିକାର । ଚିନ୍ତାଠାରୁ କର୍ମର ବ୍ୟବଧାନ ଯେତେ ବଢ଼ି ଚାଲିଛି, ମଣିଷ ହୋଇଛି ସେତିକି ଅସହାୟ ଏବଂ ସମାଜବିମୁଖ । ସମସ୍ତଙ୍କ ସଂଗରେ ଥାଇ ମଧ୍ୟ ସେ ନିଜକୁ ମଣିଛି ଭୟାନକଭାବେ ନିର୍ଜନ ଓ ଏକାକୀ । ବ୍ୟକ୍ତିର ଏଭଳି ବିଚ୍ଛିନ୍ନତା ଇତିହାସରେ ଅଭି

# ଆଧୁନିକତା ଓ ପରଂପରା

[ଆଧୁନିକତାର ପ୍ରକୃତ ଅର୍ଥ କେବଳ ପରଂପରାର ଅନୁକ୍ରମ(continuity) ନୁହେଁ, ଅତୀତ ସଂଗେ ବର୍ତ୍ତମାନର ଏକ ଚେତନଶୀଳ/ଜୈବିକ ସମ୍ପର୍କ ଏବଂ ଭବିଷ୍ୟତ ପ୍ରତି ଏକ ସ୍ପଷ୍ଟ ଅଂଗୁଳି ନିର୍ଦ୍ଦେଶ । ଅତୀତ ଓ ଭବିଷ୍ୟତ ମଧ୍ୟରେ ବର୍ତ୍ତମାନ ଏକ ସଂଯୋଗ ସୂତ୍ର । ଏହାହିଁ ଆଧୁନିକତାର ତାତ୍ପର୍ଯ୍ୟ । ଭବିଷ୍ୟତ୍‌ଦୃଷ୍ଟିହୀନ ଆଧୁନିକତା ଅତୀତର ଅଂଧ ଅନୁକୃତି ମାତ୍ର । ଆଧୁନିକତାର ଲକ୍ଷ୍ୟ ଆଧୁନିକତର, ଅତୀତକୁ ପଳାୟନ ନୁହେଁ ।]

ଆଧୁନିକତା ଏକ ସ୍ୱୟଂଭୂ ବା ବସ୍ତୁନିରପେକ୍ଷ ଜିନିଷ ନୁହେଁ । ଉତ୍ପାଦନ ପଦ୍ଧତିରେ ବୈପ୍ଳବିକ ପରିବର୍ତ୍ତନ ଯୋଗୁ ମଣିଷର ସାମାଜିକ-ସମ୍ପର୍କ ବଦଳିବା ସଙ୍ଗେ ସଂଗେ ତାର ରୁଚି, ମୂଲ୍ୟବୋଧ ଓ ଭାବପ୍ରକାଶର ଭଂଗୀ ଓ ଭାଷାରେ ମଧ୍ୟ ଦ୍ରୁତ ପରି-ବର୍ତ୍ତନ ଘଟିବାକୁ ବାଧ୍ୟ । ମଣିଷର ଜୀବନଧାରା ବଦଳି ଚାଲିଥିବ ଅଥଚ ତାର ଚିଂତା ଭାବନା, ଶିଳ୍ପ, ସାହିତ୍ୟ ଯେଉଁଠି ଥିଲା ସେଇଠି ରହିଥିବ ଏହା ହୋଇ ନ ପାରେ । କାଳିଦାସଙ୍କ ଯୁଗର ଗତି ଯଦି ଘଂଟାକେ ୨୦ମାଇଲ୍ ବୋଲି(ଅଶ୍ୱପୃଷ୍ଠରେ) ଧରାଯାଏ, ଆମ ଯୁଗର ଗତି ଘଂଟାକେ ବହୁ ସହସ୍ର ମାଇଲ୍ (ରକେଟରେ) । ତେଣୁ ଆମର ରୁଚି ଦୃଷ୍ଟିକୋଣ, ମୂଲ୍ୟବୋଧ ଓ ସାହିତ୍ୟ ତାଂକ ଯୁଗ ପରି ରହିବ କିପରି ? କେବଳ ସେତିକି ନୁହେଁ, ଆଂଗିକରେ ମଧ୍ୟ ମୌଳିକ ପରିବର୍ତ୍ତନ ଏବଂ ରୂପାଂତର ଘଟିବା ସ୍ୱାଭାବିକ । ମାତ୍ର କଥା ହେଲା, ଆଧୁନିକତା ବିଚ୍ଛିନ୍ନ ଭାବରେ ସଂଘଟିତ ହୁଏ ନାହିଁ । ତାହା ଅତୀତର ଏକ ନ୍ୟାଯ୍ୟ ଐତିହାସିକ ପରିଣତି, ଠିକ୍ ଯେପରି ବିଜ୍ଞାନରେ ଘଟିଥାଏ । ନ୍ୟୁଟନ୍‌ଙ୍କୁ ଛାଡ଼ିଦେଲେ ଆଇନ୍‌ଷ୍ଟାଇନ୍ ସଂଭବ ହୋଇନଥାଂତେ ।

ଧୀମାନ ସ୍ରଷ୍ଟାଙ୍କୁ 'ଐତିହ୍ୟମୟ ସୃଷ୍ଟିଶୀଳତା' ପାଇଁ ଏଲିୟଟ ଆହ୍ୱାନ କରି-ବେଳେ ସେ କଳାର ପ୍ରବହମାନତା ସଂଗେ ତାର ସାମୂହିକ ସ୍ଥିତିକୁ ରେଖାଂକିତ କରିଛଂତି । ଅତୀତ ଓ ବର୍ତ୍ତମାନ ମଧ୍ୟରେ ପ୍ରତିକୂଳ ସଂପର୍କ ଅପେକ୍ଷା ପରିପୂରକ ସଂପର୍କହିଁ ବେଶୀ । ଏଲିୟଟଂକର ଏ କଥା ମାନିନେବାକୁ ଆଧୁନିକ ମନ ଦ୍ୱିରୁକ୍ତି କରେ ନାହିଁ । ମାତ୍ର ସେ ଯେତେବେଳେ କଂହନ୍ତି ଯେ ସେ ରାଜନୀତିରେ ଜଣେ ରାଜ ତଂତ୍ରବାଦୀ (ମୋନାର୍କିଷ୍ଟ), ଧର୍ମରେ ଜଣେ ରୋମାନ୍ କ୍ୟାଥଲିକ୍ ଏବଂ ସାହିତ୍ୟରେ ଜଣେ କ୍ଲାସିକ୍‌ପଂଥୀ ସେତେବେଳେ ଆଧୁନିକତା ତାଂକୁ ଫୋପାଡ଼ିଦିଏ । କାରଣ ଇତିହାସର ପଛୁଆ ମୁଅରେ ଯିବା ଆଧୁନିକତାର ଧର୍ମ ହୋଇ ନ ପାରେ । ଜୀବନ ତାହା କରାଇଦିଏ ନାହିଁ । ମୋଟ ଉପରେ ପରଂପରା ସଂଗେ ଆଧୁନିକତାର ଏକ ସ୍ପଂଦନଶୀଳ ଜୈବିକ ସଂପର୍କ ହିଁ ଏକମାତ୍ର ସାର୍ଥକ ସଂପର୍କ । ତାହା ନ ହେଲେ ପରଂପରା ଅନୁଶୀଳନ ସାମାଜିକ ସଂଗତି (social relevance) ହରାଇ ଏକ ଅଂଧ ଅନୁକୃତିରେ ପର୍ଯ୍ୟବସିତ ହେବ । ଶଙ୍କୁର୍ଜିସ 'କାବ୍ୟିକ ମନସ୍ତତ୍ତ୍ୱ' ଧାରାରେ ଆଧୁନିକ କବିତାର ବସ୍ତୁ-ବିମର୍ଶ କରି ଆଦିମ ଯାଦୁ ବିଶ୍ୱାସ ସ୍ଥାନ ବିଜ୍ଞାନ ଦ୍ୱାରା ପୂରଣ କରିଛଂତି ।

ପରଂପରାର ଆଉ ଏକ ପ୍ରଚଂଡ ଶକ୍ତିଶାଳୀ ଭୂମିକା ରହିଛି । ଏହା ଆମର ଅଜ୍ଞାନ ମନର ଭଂଡାରଘର । ମଣିଷର ଯୁଗ ଯୁଗର ସଂଚିତ ଅଭିଜ୍ଞତାର ମୂର୍ତ୍ତି ଓ ସଂକେତକୁ ଏହା ଧରିରଖିଥାଏ । ତାର ସାମୂହିକ ମଗ୍ନଚୈତନ୍ୟର (Collective

Unconscious—C. C. Jung)ର ଆଧାର ଓ ଆଦିରୂପ (archetypes) ଏଥିରେ ସଂଚିତ ହୋଇରହିଚି । ଆମ ଜାତିର ସାମୂହିକ ସ୍ମୃତି, (racial memory —ଖାଲି ଆମ ଜାତି କାହିଁକି ସମଗ୍ର ମଣିଷ ଜାତିର—ହଜାର ହଜାର ବର୍ଷର ଅଭିଜ୍ଞତାର ସଂକେତ ଓ ସଂଚିକ ପୁରାଣ, ଉପକଥା, ଓ ଅତି କଥା ଆଦିରେ ବିଧୃତ ହୋଇରହିଚି । ଆଧୁନିକତା ଏ ସବୁଥିରୁ ଶକ୍ତି ଗ୍ରହଣ କରିଥାଏ ।

ଆଧୁନିକ କବିତାର ପାରଂପରିକ କବିତାଠାରୁ ଆପାତବିଚ୍ଛିନ୍ନତାର ବଡ଼ କାରଣ ହେଲା ଉପମା ଓ ଚିତ୍ରକଳ୍ପ ଆଦିର ଦୁର୍ବୋଧତା । ସମସ୍ତଚେତନାର ଭାବଦଳ ମଧ୍ୟ ଅନ୍ୟ ଏକ କାରଣ । ଏ ବିପ୍ଳବର ଆଭାସ ମିଳେ ସପ୍ତଦଶ ଶତାବ୍ଦୀର ମେଟାଫିଜି-କାଲ କବିମାନଙ୍କ କାବ୍ୟରେ । (ଯେଉଁଥିରେ ଡଃ ଜନସନଙ୍କ ଭାଷାରେ 'hetero-genous ideas yoked by violence together') ଓ୍ୱାର୍ଡ଼ସ୍‌ଓ୍ୱାର୍ଥ ଓ କଲେରିଜ୍ ଏ ସବୁକୁ ନେଇ କଳ୍ପନା-ବିକଳ୍ପନା (ଫ୍ୟାନ୍‌ସି)ର ସୀମା-ରେଖା ଟାଣନ୍ତି, ଆମ ଯୁଗରେ ତ ଇଷ୍ଟମ୍ୟାନ ଆଧୁନିକ କବି ନିଜକୁ ଠକାଏ ବୋଲି ଭାବନ୍ତି ଏବଂ ଉପମା ଚିତ୍ରକଳ୍ପ ଓ ଅଲଂକାର ବିରୋଧରେ ସ୍ୱର ଉଠାନ୍ତି । ('ଲିଟେରାରି ମାଇଣ୍ଡ୍') ଗ୍ରାଭେ (ତାଂକର 'ସେନ୍‌ସ ଇନ୍ ପୋଏଟ୍ରି'ରେ) ଏବଂ ଲୁକାସ୍ ମଧ୍ୟ ସାଧାରଣ ପାଠକର ପକ୍ଷ ନେଇ ଯୁକ୍ତି ବାଢ଼ନ୍ତି । ସେ ଯାହାହେଉ, କାର୍ଲ ସାପିରୋଙ୍କ ଭଳି କେତକେ ମନେକରନ୍ତି ଯେ ଆଧୁନିକ କବିତା କ୍ରମେ ଊନବିଂଶ ଶତାବ୍ଦୀର ମହାସ୍ରୋତଆଡ଼କୁ ଫେରିଯାଉଚି । 'In Defence of Ignorance' (୧୯୬୨) ଷ୍ଟିଫେନ୍ ଷ୍ପେଣ୍ଡେରଙ୍କର ବକ୍ତବ୍ୟ ହେଲା—ଏଲିୟଟ୍, ଜୟସ୍ ପ୍ରଭୃତିଙ୍କର କେତୋଟି 'ହିରୋଇକ୍ ଡାଇମେନସନ୍'ର କାବ୍ୟକୃତିକୁ ଛାଡ଼ିଦେଲେ ଆଧୁନିକ ସାହିତ୍ୟ ଭବିଷ୍ୟତ ସାହିତ୍ୟର କୌଣସି ମୂଳଦୁଆ ପକାଇ ପାରିନାହିଁ । ତାଂକ ମତରେ ବର୍ତ୍ତମାନ ପଛକୁ ଫେରିବାର ସମୟ ଆସିଲାଣି । ଆଉ ଆଗକୁ ଯିବା ଅର୍ଥ କେବଳ ଦୁର୍ବୋଧ୍ୟତା, ବିଖଂଡନ (ଫ୍ରାଗ୍‌ମେଂଟେସନ୍) ଏବଂ ଆକୃତିହୀନତାକୁ (ଫର୍ମଲେସ୍-ନେସ୍) ବଢ଼ାଇବା ('The Struggle for the Modern' ଗ୍ରଂଥ ଦ୍ରଷ୍ଟବ୍ୟ) ।

କ୍ଲିଂଥ୍ ବ୍ରୁକ୍‌ସ୍ ତାଂକର, 'ମଡର୍ଣ ପୋଏଟ୍ରି ଏଣ୍ଡ୍ ଟ୍ରାଡିସନ୍' ଗ୍ରଂଥରେ ଆଧୁନିକ କବିତା ଯେଉଁଠି ପରଂପରାଚ୍ୟୁତ ସେଠାରେ ତାହା କେବଳ କେତେକ ଖାପଛଡ଼ା ଅସଂପୃକ୍ତ ଚିତ୍ରକଳ୍ପ ଓ ସ୍ମୃଂଖଳାର ସମଷ୍ଟି ବୋଲି ମନେକରନ୍ତି । ଏବେ ଆମେରିକାନ୍ ସାହିତ୍ୟରେ ପରଂପରା ଆଡ଼କୁ ଫେରିଯିବା ପାଇଁ ଯେଉଁ ସଚେତନ ଆଂଦୋଳନ ଆରଂଭ ହୋଇଥିଲା (କବି ଉଇଲିୟାମ୍ କାର୍ଲୋସ୍ ଉଇଲିୟାମ୍‌ସଙ୍କ

ନେଇଛନ୍ତି ) ତାର ସୂଚନା ଦେଇ କ୍ଲିଂଥ୍ ବ୍ରୁକ୍ସ କହନ୍ତି ଯେ ଆମେରିକାନ ପରଂପରା କହିଲେ ଖୁବ୍ ବେଶୀ ହୁଇଟମ୍ୟାନ କିଂବା ଭିକ୍ଟୋରିଆନ୍ ଯୁଗ ପର୍ଯ୍ୟନ୍ତ ହିଁ ବୁଝାଏ । ଆର୍. ଏଲ୍ମ୍ୟାନ ଓ ଫିଡ୍ଲସନ୍ ତାଂକ 'Modern Tradition' ଗ୍ରଂଥରେ 'ଆଧୁନିକ ପରଂପରା' ବୋଲି କିଛି ଅଛି କି ନାହିଁ ବୋଲି ବାରଂବାର ପ୍ରଶ୍ନ ପଚାରିଛନ୍ତି । ଖୁବ୍ ଜୋର ଆଧୁନିକ ମନୋବସ୍ଥା ବା 'ମଡର୍ଣ୍ଣ ଟେଂପର୍' ବୋଲି କିଛି ଥାଇପାରେ ବୋଲି ତାଂକ ଧାରଣା ।

ଆଧୁନିକ ଗଳ୍ପ ଓ ଉଦ୍ଭଟ ନାଟକରେ ମଧ୍ୟ ସମସ୍ତ ଭିତରେ ନିଃସମସ୍ତର ଅନୁପ୍ରବେଶ ଯୋଗୁ ନାନା ବିଭ୍ରମ ସୃଷ୍ଟି ହୋଇଛି । ଗଳ୍ପରେ ଗଳ୍ପହୀନତା ଓ ନାଟକରେ ନାଟକହୀନତାର ଅଭାବ ପ୍ରଚଳିତ ପ୍ରଥା ହୋଇଥିବାରୁ ଗଳ୍ପ/ନାଟକ ଜନପ୍ରିୟତା ହରାଇଲେଣି । ମୋଟ କଥା ହେଲା ଆଧୁନିକତାର ପ୍ରକୃତ ଅର୍ଥ କେବଳ ପରମ୍ପରାର ଅନୁକ୍ରମ (Continuity) ନୁହେଁ, ଅତୀତ ସଂଗେ ବର୍ତ୍ତମାନର ଏକ ଚେତନଶୀଳ ଜୈବିକ ସଂପର୍କ ଏବଂ ଭବିଷ୍ୟତ ପ୍ରତି ଏକ ସ୍ପଷ୍ଟ ଅଂଗୁଳିନିର୍ଦ୍ଦେଶ । ଅତୀତ ଓ ଭବିଷ୍ୟତ ମଧ୍ୟରେ ବର୍ତ୍ତମାନ ଏକ ସଂଯୋଗ ସୂତ୍ର । ଏହାହିଁ ଆଧୁନିକତାର ତାତ୍ପର୍ଯ୍ୟ । ଭବିଷ୍ୟତଦୃଷ୍ଟିହୀନ ଆଧୁନିକତା ଅତୀତର ଅଂଧ ଅନୁକୃତି ମାତ୍ର । ଆଧୁନିକତାର, ଅର୍ଥ ଅତୀତକୁ ପଳାୟନ ନୁହେଁ ।

ଆଧୁନିକ ଏକ ଆପେକ୍ଷିକ ଶବ୍ଦ । ଯାହା ଆଜି ଆଧୁନିକ ତାହା କାଲିକି ପୁରୁଣା ହୋଇଯିବ । କିନ୍ତୁ ସେଥିର ଯେଉଁ ଅଂଶ କାଳୋତ୍ତୀର୍ଣ୍ଣ ଅର୍ଥାତ୍ ପ୍ରଗତିଶୀଳ, ତାହା ଚିରକାଳ ସଜୀବ ରହିବ । ଅତୀତର ବହୁ ସଜୀବ ଅଂଶ ଆଜିର ଆଧୁନିକତା ଭିତରେ ବଚିଂ ରହିଚି । ତାର କାରଣ ତାହା ଇତିହାସର ମହାସ୍ରୋତରୁ ବିଚ୍ଛିନ୍ନ ନୁହେଁ । ସେଇପରି ଅତୀତର ବହୁ ଅଂଶ ଯାହା ଇତିହାସଚ୍ୟୁତ ତାହା ସ୍ୱତଃ ମରି-ଯାଇଚି । ହଜାର ମହାମୂଲ୍ୟ ସ୍ମୃତିସ୍ତମ୍ଭ ସ୍ଥାପନା କରି ମଧ୍ୟ କେହି ତାକୁ ବଂଚାଇ ରଖି ପାରିନାହିଁ । କୌଣସି ଜିନିଷ ଯେତେବେଳେ ସାମାଜିକ ତାତ୍ପର୍ଯ୍ୟ ହରାଏ, ଜୀବନଠୁ ଦୂରେଇଯାଏ, ସେତେବେଳେ ଖାଲି ବନ୍ଧୁତା ବଳରେ ତାକୁ ଜିଆଇ ରଖିହେବ ନାହିଁ।

ଉନବିଂଶ ଶତକର ଗତାନୁଗତିକତା ଭିତରେ ପାଠକ ଯେତେବେଳେ ଅଣନିଃଶ୍ୱାସୀ ହୋଇ ଉଠିଥିଲା, ସେତେବେଳେ ଆଧୁନିକ କବିତା, ଗଳ୍ପ, ଉପନ୍ୟାସ, ନାଟକ ତାକୁ ସେଇ ଗତାନୁଗତିକତା ପ୍ରବାହରୁ ରକ୍ଷା କରିଥିଲା । ତା ମନରେ ନୂତନ ରସଚେତନା ସଞ୍ଚାର କରିଥିଲା, ତାକୁ ନୂଆ ଦିଗ୍‌ଦର୍ଶନ ଦେଇଥିଲା ଏବଂ ତାକୁ ନିଜକୁ ଚିହ୍ନିବାରେ ସାହାଯ୍ୟ କରିଥିଲା । ନବୀନତା, ସଜୀବତା ଥିଲା ଆଧୁନିକ ସାହିତ୍ୟର

ପ୍ରଧାନ ଗୁଣ । ଆମେରିକାନ୍ କବିତା ହୁଇଟ୍‌ମ୍ୟାନଙ୍କ ଗଣତାଂତ୍ରିକ-ବିଶ୍ୱଭାବବାଦର ଖୋଲପା ତ୍ୟାଗ କଲା । ଇଂରାଜୀ କବିତା ଭିକ୍‌ଟୋରିଆନବାଦର ଜୀର୍ଣ୍ଣ ସରହଦ ଛାଡ଼ି ନୂତନ ସୀମାଂତ ଆଡ଼କୁ ଗୋଡ଼ ବଢ଼ାଇଲା । ଭାରତୀୟ କବିତା ଗତ ଓ କଳ୍ପିତ ରସ (ଯାହାର ଅର୍ଥ ମୁଖ୍ୟତ ଶୃଂଗାର ରସ) ଛାଡ଼ି ଜୀବନର ବିସ୍ତୀର୍ଣ୍ଣ ପ୍ରାଂଗଣରେ ପ୍ରବେଶ କଲା । ଗଳ୍ପ/ଉପନ୍ୟାସ/ନାଟକରେ ମଧ୍ୟ ସେଇ ଏକଇ କଥା,—ଅର୍ଥାତ୍ ଜୀର୍ଣ୍ଣ ବସନ ତ୍ୟାଗ କରି ନୂତନ ଆଂଗିକ ଓ ଆତ୍ମିକ ଅନ୍ୱେଷଣରେ ଶୁଭ ପଦକ୍ଷେପ ଆରଂଭ ହେଲା । ତେଣୁ ଯେଉଁମାନେ ସାହିତ୍ୟର ଇତିହାସ ଲେଖିଲେ ଯଥା, ଅଂଟରମେଅରସ୍, ମନରୋ, ସେମାନେ ଆଧୁନିକତାକୁ ମୁକ୍ତି, କ୍ଲାଂଶେ ଓ ପୁରୁଣା ବିଷୟବସ୍ତୁ ବର୍ଜିତ ସାହିତ୍ୟକୃତି ନାମରେ ଆଖ୍ୟାତ କଲେ ।

ତେଣୁ ଗ୍ରହଣ ଅପେକ୍ଷା ବର୍ଜନହିଁ ଥିଲା ଆଧୁନିକତାର ବଡ଼ ଲକ୍ଷଣ ଏବଂ ବଡ଼ କୀର୍ତ୍ତି । ସେଥିପାଇଁ ଆଧୁନିକମାନେ ଯାହା ଲେଖିଲେ ତାହା ତୁଳନାରେ ଯାହା ନ ଲେଖିଲେ ସେଥିପାଇଁ ହିଁ ବେଶୀ ପ୍ରଶଂସା ପାଇଲେ । ତାଂକୁ ନୂତନତାର ଅଗ୍ରଦୂତ ରୂପେ ଜୟମାଲ୍ୟ ଦିଆଗଲା ।

ମାତ୍ର ଆଧୁନିକତା କ୍ରମେ ଜୀବନର ବିସ୍ତୃତ ଅଂଗନରୁ ନିର୍ବାସିତ ହୋଇ ଲେଖକର ସଜଡ଼ା ବୈଠକଖାନାରେ ଆବଦ୍ଧ ହୋଇପଡ଼ିଲା । ଏହାର ସମାନ୍ୟ-କଥନ ଏଭଳି ଶୋଚନୀୟ ଭାବରେ ସଂକୁଚିତ ହେଲା ଯେ ଏହାକୁ ଆଉ ସମାଜ-ମାନସର ଉଚ୍ଚାରଣ ଭାବରେ ଚିହ୍ନି ହେଲନାହିଁ । ଏହା ହେଲା ସଂପୂର୍ଣ୍ଣ ବ୍ୟକ୍ତିସର୍ବସ୍ୱ ଯେଉଁ ବ୍ୟକ୍ତି କି ସମାଜର କେହି ନୁହେଁ ବରଂ ଏକ ବିଚ୍ଛିନ୍ନ, ଶାପଗ୍ରସ୍ତ ଏକକ । କବିର ଆତ୍ମନିର୍ବାସନ ଆଉ କାହାକୁ ଛୁଇଁପାରିବ ?

ଏଣେ ସମାଜର ଦ୍ରୁତ ପରିବର୍ତ୍ତନ କବି ଓ ଲେଖକର ଜୀବନ-ସଂଘର୍ଷ ଏବଂ ମାନସିକ ଦ୍ୱଂଦ୍ୱ ଓ ସଂକଟକୁ, ଅନ୍ତର ଗଭୀର ଭାବରେ ପ୍ରଭାବିତ କଲା, ଜଟିଳତର କଲା । ପ୍ରଯୁକ୍ତିବିଦ୍ୟା ବା ଟେକ୍‌ନୋଲୋଜିର ବ୍ୟାପକ ପ୍ରସାର, ବିଜ୍ଞାନର ଆଧିପତ୍ୟ ଏବଂ ସର୍ବୋପରି ଘନିଷ୍ଠ ବ୍ୟକ୍ତିକ ସଂପର୍କ ସ୍ଥାନରେ ଏକ ନୈର୍ବ୍ୟକ୍ତିକ ସମାଜ-ସଂପର୍କ ଭିତରେ ବ୍ୟକ୍ତି କ୍ରମେ ଅସହାୟ ଓ ବିଚ୍ଛିନ୍ନ ହୋଇ ପଡ଼ିଲା । ଆଜି ସମାଜରେ କାହା ସହିତ କାହାର କିଛି ମାନବିକ ବ୍ୟକ୍ତିଗତ ସଂପର୍କ ନାହିଁ । ସବୁକିଛି ପ୍ରଥାଗତ ଓ ଯାଂତ୍ରିକ । ଏଭଳି ଅସହାୟ ପରିସ୍ଥିତିରେ ମହାସ୍ରୋତକୁ ଫେରିଯିବା ପାଇଁ ଡାକରା ଆସିବା କିଛି ବିଚିତ୍ର ନୁହେଁ । ଆମେରିକାରେ କବି ଉଇଲିୟାମ ଏ ଆଂଦୋଳନର ନାୟକତ୍ୱ ଗ୍ରହଣ କଲେ । ଆମେରିକା ଓ ଇଂଲଂଡର ଅନେକ ଲେଖକ, ଯଥା କାର୍ଲ ସାପିରୋ, ଷ୍ଟାର୍ବୋ, ଓ୍ୱେଷ୍ଟମ୍ୟାନ୍, ଇଂଲଂଡର ଷ୍ଟିଫେନ୍ ସ୍ପେଂଡର, ଲୁକାସ୍ ଅଧୁନିକ

ସାହିତ୍ୟ, ବିଶେଷ କରି ଆଧୁନିକ କବିତା ଦୁର୍ବୋଧ ବୋଲି ପ୍ରକାଶ୍ୟରେ ଅଭିଯୋଗ ବାଢ଼ିଲେ । (ଏଠାରେ ଦେଖିବାର କଥା ଯେ ଆମେରିକାରେ ଊନବିଂଶ ଶତକ ଶେଷରେ ଯେପରି ହୁଇଟ୍‌ମ୍ୟାନ କିଂବା ଭିକ୍‌ଟୋରିଆବାଦ ପର୍ଯ୍ୟନ୍ତହିଁ ବୁଝାଏ ଇଂରାଜୀ ସାହିତ୍ୟରେ ଏହା ତାହାଠାରୁ ଢେର ବ୍ୟାପକ ।)

ପରଂପରାକୁ ଫେରିଯିବା ଅର୍ଥ ପରଂପରାର ପୁନରାବୃତ୍ତି ନୁହେଁ । ଇତିହାସ ଏହା କଦାପି କରାଇ ଦେବ ନାହିଁ । ପରଂପରାର ଜୀବନ୍ତ ଅଂଶକୁ ଗ୍ରହଣ କରିବାହିଁ ଏ ଆନ୍ଦୋଳନର ଲକ୍ଷ୍ୟ । ତେଣୁ ଊନବିଂଶ ଶତକର ଯାହା ସଜୀବ ଅଂଶ, ଯଥା ହୁଇଟ୍‌-ମ୍ୟାନଙ୍କ ବାସ୍ତବମୁଖୀ-ଔଦ୍ଧତ୍ୟବାଦୀ ସାଧାରଣକଥନ (Public Speech), (ଯଦିଓ ତାଂକର ପ୍ରାଇଭେଟ ସ୍ମୃତିହିଁ ଅଧିକ କବିତ୍ୱମୟ) ଏବଂ ବର୍ତ୍ତମାନ କାଳର ଐଦ୍ଦେଶ୍ୟହୀନତା, ଦୁର୍ବୋଧତା ପ୍ରଭୃତିର ଉଚ୍ଛେଦ ସପକ୍ଷରେ ହିଁ ସଚେତନ ମତ ପ୍ରକାଶ ପାଉଛି ।

ଟେକ୍‌ନିକ ନ ହଁଗି ଇଏଟସଂକ ଭଳି ବିଜ୍ଞାନ ଓ କବିତା ମଧ୍ୟରେ ଏକ ପୁନର୍ମିଳନ ସଂଘଟନ କରାଯାଇପାରେ । ଯଦିଓ ତା ଧର୍ମ ମାଧ୍ୟମରେହିଁ ହୋଇଛି । ଅତୀତକୁ ଧର୍ମୀୟ ଦୃଷ୍ଟିରେ ଦେଖିବା ଅର୍ଥ ଏହାକୁ ସମଗ୍ରରେ ହିଁ ଦେଖିବା । ପ୍ରାକୃତିକ ବିଜ୍ଞାନ କିଂତୁ ସମ୍ପୂର୍ଣ୍ଣ ଭିନ୍ନ । ଏହାର ଅତୀତ, ବର୍ତ୍ତମାନ, ଭବିଷ୍ୟତ ବୋଲି କିଛି ନାହିଁ । ଏହା ସଂଖ୍ୟାକୁ ନେଇ ଗଠିତ, ତେଣୁ ହମସ୍ତ-ବିଜ୍ଞାନ । ଆମେରିକାର ଜଣେ ପ୍ରସିଦ୍ଧ କବି ଓ ସମାଲୋଚକ ଆଲେନ ଟାଟେ ମାନବିକତାବାଦୀ ପ୍ରାକୃତିକବାଦରେ ଆସ୍ଥା ସ୍ଥାପନ କରନ୍ତି । ସେ ଅତୀତକୁ ସମସାମୟିକ କରିବା କଥା (to contemporize the past) କହନ୍ତି । କିଂତୁ ଏହାର ବାସ୍ତବ ପରିଣାମ ହେବ କାଳସମସ୍ତୀ-କରଣ । କାରଣ ଅତୀତ କେତେକ କ୍ରମିକ କାରଣପୁଂଜରେ (causal series] ପରିଣତ ହେବ ଏବଂ ଫଳରେ ସମୟହୀନ ହୋଇପଡ଼ିବ ।

ଭିକ୍‌ଟୋରିଆନ କବିତା ବହିଃକରଣର (exclusion) କବିତା । କିଂତୁ ଆଧୁନିକ କବିତା ଅନ୍ତଃକରଣ (iuclusion) ଉପରେ ପ୍ରତିଷ୍ଠିତ । ବହୁ ଆପାତ-ବିଷମ ଓ ଅସମଂଜସ ବସ୍ତୁକୁ ସ୍ୱାଂଗୀକରଣ କରି ଏହା ଅଭିବୃଦ୍ଧି ଓ ବୈଚିତ୍ର୍ୟ ଲାଭ କରିଛି । ଏହି ପ୍ରକ୍ରିୟା ଆଧିଭୌତିକ କବି ଗୋଷ୍ଠୀଂକଠାରୁ ଆରଂଭ ବୋଲି ଏଲିୟଟ୍ ଦେଖାଇଥିଲେ (ଯଦିଓ ପରେ ନିଜ ମତ ଆଂଶିକ ସଂଶୋଧନ କରିଥିଲେ) କିନ୍ତୁ ଆଧୁନିକ କବି ଜନ ରାନ୍‌ସମ୍ ପ୍ରଭୃତି ମଧ୍ୟ ମନେ କଲେଣି ଯେ ବିଜ୍ଞାନ ପ୍ରଭାବଂକାଳ ଭିତରେ ରହି ଆଧୁନିକ କବିଂକ ମଧ୍ୟରୁ ଅନେକେ ଚେତନାର ବିଚ୍ଛେଦର (dissociation of sensibility) ଭୋଗିଲେଣି ।

ସେ ଯାହାହେଉ, ପରଂପରାର ଜୀବନ୍ତ ଅଂଶ ପୁରୁଷାନୁକ୍ରମେ ଆମର ସ୍ମୃତି ଓ ଅବଚେତନରେ ସଂଚିତ ହୋଇରହିଛି । ଏହାକୁହିଁ ବୋଧହୁଏ ଇଏଟସ୍ 'ମହାସ୍ମୃତି' (*Anima Mundi*) କହିଛଂତି । ଏଲିୟଟ ସ୍ପଂଦନଶୀଳ ଐତିହ୍ୟକୁ ସୃଷ୍ଟିଶୀଳ ଚେତନାରେ ଗ୍ରହଣ କରିବା ପାଇଁ ଲେଖକମାନଂକୁ ପରାମର୍ଶ ଦେଇଛଂତି ।

ଆଂଗିକ ଦିଗରୁ ଦେଖିବାକୁ ଗଲେ ଆଧୁନିକ ସାହିତ୍ୟ ବହୁ ଦିଗରୁ ସମୃଦ୍ଧ । ଏଲିୟଟ ଗ୍ରିବଂଟି କବିର କାବ୍ୟକୃତିର ସବୁଠାରୁ ସ୍ୱକୀୟତମ ଅଂଶ ହେଉଛି ସେଇ ଯାହା ଭିତରେ କି ମୃତ କବିମାନେ, ଆମର ପୂର୍ବପୁରୁଷମାନେ ନିଜର ଅମରତ୍ୱ ଜାହିର କରିଥାଂତି । ଆଧୁନିକ ଲେଖକମାନଂକ ମଧ୍ୟରୁ ଅଧିକାଂଶ ଏହା ହାସଲ କରିପାରି ନାହାଂତି । ଅନେକେ ତ details ବା ଖୁଁଟିନାଁଟି ବର୍ଣ୍ଣନା ନେଇ ବ୍ୟସ୍ତ ଥିଲେ । ଆର୍ଣ୍ଣେଷ୍ଟ ହେମିଂଗ୍‌ୱେ ପ୍ରକାଶ୍ୟରେ କହିଥିଲେ : ଖୁଟିନାଁଟି ଗୁଡ଼ିକର ବସ୍ତୁନିଷ୍ଠ ବର୍ଣ୍ଣନା କଲେହିଁ ତମ ଲେଖା ପଂଚମ ଆୟତନ (dimension) ଲାଭ କରେ । ଆଧୁନିକ କବିତାରୁ ଏଇ ବହିର୍ମୁଖୀନତା ଅଧିଭୌତିକ କବିମାନଂକଠାରେହିଁ ପ୍ରଥମେ ଦେଖାଯାଏ । ଡେଣ୍ଟ ଗ୍ରାନସମ୍ ଏହାକୁ ଫିଜିକାଲ ପୋଏଟ୍ରି କହିଛଂତି । ଆଧୁନିକତା ପରଂପରାର ସଜୀବ ଅଂଶ ଗୁଡ଼ିକ ଗ୍ରହଣ କରି ବିକାଶ ଲାଭ କଲେ ଏହାର ଭିତ୍ତି ଆହୁରି ଦୃଢ଼ମୂଳ ହୋଇପାରିବ, ଏଥିରେ ସଂଦେହ ନାହିଁ ।

ଜାନୁଆରୀ ୧୯୭୮
( ବଂଗଳା ସଂପାଦକୀୟ )

# ଆଧୁନିକ ସାହିତ୍ୟର ସଂକଟ

[ଆଧୁନିକ ମଣିଷ ନାନା ଭାବରେ ଦ୍ୱିଧାବିଭକ୍ତ, ଏକ ଖଣ୍ଡିତ ବ୍ୟକ୍ତିତ୍ୱ । ତାର ଚେତନା ତଥା ବ୍ୟକ୍ତିତ୍ୱର ବିଭାଜନ ପାଇଁ ଦାୟୀ ପ୍ରଚଳିତ ସମାଜ-ବ୍ୟବସ୍ଥା । ସମାଜର ସ୍ୱବିରୋଧ ଓ ଅନ୍ତର୍ଦ୍ୱନ୍ଦ୍ୱହିଁ ବ୍ୟକ୍ତିକୁ ସମାଜଠାରୁ ବିଚ୍ଛିନ୍ନ କରିଦେଇଛି ।

ଆଧୁନିକ ସାହିତ୍ୟରେ ନାୟକ ବୋଲି ଯାହାକୁ ଆମେ ଭେଟୁଁ, ସେ ସ୍ୱଭୂମିରେ ବିଚ୍ଛିନ୍ନ ଓ ନିର୍ବାସିତ ଏକ ଅସଂଲଗ୍ନ ଏକକ—ଯାହାର ମୂଲ୍ୟବୋଧର ସଂଗଠନ ଓ ସ୍ଥିତି ପ୍ରାୟ ଲୋପ ପାଇ ଯାଉଛି ।]

ଆଧୁନିକ ସାହିତ୍ୟ ବିଭିନ୍ନ ସଂକଟ ମଧ୍ୟ ଦେଇ ଗତି କରୁଛି । ଏଥିରୁ ଯେ କେତେକ ଜିଜ୍ଞାସା ଜାଗିବ ସେ ବିଷୟରେ ବିଭିନ୍ନ ବ୍ୟକ୍ତି ବିଭିନ୍ନ ଦିଗରୁ ଚିନ୍ତା କରୁଛନ୍ତି । ଯେପରି ଦେଖାଯାଉଛି, ସାହିତ୍ୟ କ୍ରମେ ଜୀବନର ମହାସ୍ରୋତରୁ ବିଚ୍ଛିନ୍ନ ହୋଇପଡ଼ିଲାଣି । ସାହିତ୍ୟ ଆଉ ସମାଜ-ଜୀବନର ପ୍ରତିନିଧିତ୍ୱ କରୁନାହିଁ । ଅତ୍ୟଧିକ ବ୍ୟକ୍ତିକେନ୍ଦ୍ରିକତା ବୋଧହୁଏ ଏହାର ଅନ୍ୟତମ କାରଣ । ଯେଉଁମାନେ ଆଜି ସାହିତ୍ୟ ସୃଷ୍ଟି କରୁଛନ୍ତି, ସେମାନେ ସାଧାରଣ ଜୀବନଠାରୁ ଶୋଚନୀୟ ଭାବରେ ବିଚ୍ଛିନ୍ନ ଜଣାଯାଏ । ସେମାନଙ୍କର ଜଗତ ଏକ ବିଚିତ୍ର ଖଣ୍ଡିତ ଜଗତ । ଏହି ଜଗତକୁ ସମାଜ ଜଗତ ବୋଲି ଗ୍ରହଣ କରିପାରୁନାହିଁ । ଫଳରେ ଆଧୁନିକ ସାହିତ୍ୟ ପ୍ରଶସ୍ତ ଜନପଥ ଛାଡ଼ି ଏକ ଅନ୍ଧଗଳି ଭିତରେ ପ୍ରବେଶ କରୁଛି । ଏଥିପାଇଁ ଅବଶ୍ୟ କେବଳ ସାହିତ୍ୟିକଙ୍କୁ ଦୋଷ ଦିଆଯାଇ ନ ପାରେ । ଆଧୁନିକ ଚେତନା ନାନା ବିଡ଼ମ୍ବନା ଏବଂ ଖଣ୍ଡିତ ଅଭିଜ୍ଞତା ଓ ଅନୁଭୂତିର ସମଷ୍ଟି । ଏହି ଚେତନା ସୃଷ୍ଟି କରୁଛି ସ୍ରଷ୍ଟାର ପରିବେଶ ଓ ରୂଢ଼ ବାସ୍ତବତା । ଏହି ବାସ୍ତବତା ପାଇଁ ସାହିତ୍ୟିକ ଦାୟୀ ନୁହେଁ । ସେ ଏହାକୁ ଉତ୍ତରାଧିକାର ସୂତ୍ରରେ ପାଇଛି ମାତ୍ର । ଏହା ତାର ଅଦୃଷ୍ଟ ।

ବାସ୍ତବିକ୍ ଆଧୁନିକତା କହିଲେ କଣ ବୁଝାଏ, ତାର କୌଣସି ସଠିକ ସଂଜ୍ଞା ଏ ପର୍ଯ୍ୟନ୍ତ ନିର୍ଣ୍ଣିତ ହୋଇନାହିଁ । କେହି କେହି ଏହାକୁ ଯନ୍ତ୍ରୀକରଣ (industrialisation) ଏବଂ ନଗରୀକରଣ (urbanisation) ସଂଗେ ସମାନ (equate) କରିଥାନ୍ତି । କେହି କେହି ପୁଣି କହନ୍ତି ଯେ ଏହା ପାଶ୍ଚାତ୍ୟକରଣ (westernisation) ସଂଗେ ସମତୁଲ । ଯନ୍ତ୍ରୀକରଣ ଏବଂ ତାହାର ଅନିବାର୍ଯ୍ୟ ପରିଣାମ ନଗରୀକରଣ ସଂଗେ ଯଦି ଆଧୁନିକତାର ସମୀକରଣ କରାଯାଏ, ତେବେ ବୈଜ୍ଞାନିକ କୌଶଳ ଓ ପ୍ରୟୋଗବିଦ୍ୟାରେ ସର୍ବାପେକ୍ଷା ଅଧିକ ଅଗ୍ରସର ନାତ୍ସି ଜର୍ମାନୀକୁ—ଯାହା ବର୍ବରତାର ନାମାନ୍ତର, ସର୍ବାଧୁନିକ ବୋଲି ବୁଝାଯାଇ ପାରିଥାନ୍ତା । ମାତ୍ର ତାହା କେହି କହୁନାହିଁ—କି କହିବେ ନାହିଁ । ତେଣୁ ଆଧୁନିକତାର ଭିତ୍ତି ଓ ଉତ୍ସ ଯେ ମାନବବାଦ—ଏଥିରେ କୌଣସି ସନ୍ଦେହ ଥାଇ ନ ପାରେ ।

ଆଧୁନିକ ମଣିଷ ନାନା ଭାବରେ ଦ୍ୱିଧାବିଭକ୍ତ, ଏକ ଖଣ୍ଡିତ ବ୍ୟକ୍ତିତ୍ୱ । ତାର ଚେତନା ତଥା ବ୍ୟକ୍ତିତ୍ୱର ବିଭାଜନ ପାଇଁ ଦାୟୀ ପ୍ରଚଳିତ ସମାଜବ୍ୟବସ୍ଥା । ସମାଜର ସ୍ୱବିରୋଧ ଓ ଅନ୍ତର୍ଦ୍ୱନ୍ଦ୍ୱ ହିଁ ବ୍ୟକ୍ତିକୁ ସମାଜଠାରୁ ବିଚ୍ଛିନ୍ନ କରିଦେଇଛି । ତେଣୁ ଆଧୁନିକ ମଣିଷ ସବୁଆଡ଼ୁ ବିମୁଖ ହୋଇ, ହୋଇଛି ଏକ ଭୟଙ୍କର ନିଃସଙ୍ଗତାର ଶିକାର । ଚିନ୍ତାଠାରୁ କର୍ମର ବ୍ୟବଧାନ ଯେତେ ବଢ଼ି ଚାଲିଛି, ମଣିଷ ହୋଇଛି ସେତିକି ଅସହାୟ ଏବଂ ସମାଜବିମୁଖ । ସମସ୍ତଙ୍କ ସଂଗରେ ଥାଇ ମଧ୍ୟ ସେ ନିଜକୁ ମଣିଛି ଭୟାନକଭାବେ ନିର୍ଜନ ଓ ଏକାକୀ । ବ୍ୟକ୍ତିର ଏଭଳି ବିଚ୍ଛିନ୍ନତା ଉଦ୍ଭବରେ ଅଭି

କେବେ ଘଟିଥିଲା କି ନାହିଁ ସଂନ୍ଦେହ । ସମାଜ ସହିତ ଖାପ ଖୁଆଇ ନ ପାରି ବ୍ୟକ୍ତି ହୋଇଛି ଏକ ନିଃସଂଗ, ଅର୍ଥହୀନ, ଏକକ ସତ୍ତା । ତାର ସମସ୍ତ ଉଚ୍ଚାରଣ ହୋଇଛି ବେଖାପ ଓ ଅର୍ଥହୀନ । ଆଧୁନିକ କାବ୍ୟ କବିତା, ଗଳ୍ପ-ଉପନ୍ୟାସ, ନାଟକରେ ଆଜି ଯେଉଁ ଅସଂଭବ ଦୁର୍ବୋଧତା ଦେଖାଦେଇଛି, ତା ମୂଳରେ ବି ରହିଛି ଏହି ବିଭକ୍ତ ବ୍ୟକ୍ତିତ୍ୱ—ଯିଏ ନିଜକୁ ମଧ୍ୟ ଠିକ୍ ଭାବରେ ଚିହ୍ନି ପାରୁନାହିଁ—କଣ କହିବାକୁ ଚାହେଁ ଏବଂ କଣ କହିବାକୁ ଚାହେଁ, ତା ମଧ୍ୟ ଠିକ୍ ଭାବରେ ଠଉରାଇ ପାରୁନାହିଁ । ଯେଉଁ ସମାଜରେ, ଇତିହାସର ବିଭିନ୍ନ ପର୍ଯ୍ୟାୟରେ, ଚିଂତା ଓ କର୍ମ ମଧ୍ୟରେ ବ୍ୟବଧାନ ବ୍ୟାପକତର ହୋଇଛି, ସେତେବେଳେ ଆଙ୍ଗିକ ଓ ଆତ୍ମିକ ମଧ୍ୟରେ ମଧ୍ୟ ପ୍ରବଳ ବ୍ୟବଧାନ ସୃଷ୍ଟି ହୋଇଛି ଏବଂ ଫଳରେ ଦୁର୍ବୋଧତା ମଧ୍ୟ ସୃଷ୍ଟି ହୋଇଛି ।

ଆଧୁନିକ ସାହିତ୍ୟରେ ନାୟକ ବୋଲି ଯାହାକୁ ଆମେ ଭେଟୁଁ, ସେ ସ୍ୱଭୂମିରେ ବିଚ୍ଛିନ୍ନ ଓ ନିର୍ବାସିତ ଏକ ଅସଂଲଗ୍ନ ଏକକ—ଯାହାର ପୂର୍ବାପର ସଂଗତି ଓ ସ୍ମୃତି ପ୍ରାୟ ଲୋପ ପାଇ ଯାଉଛି । ଏହି 'man as alien' ବା ବିଚ୍ଛିନ୍ନ ମଣିଷଟି ହେଉଛି ତୁମେ, ମୁଁ ଓ ସମସ୍ତେ । ଆତ୍ମନିର୍ବାସନର ଅଭିଶାପ ମଣିଷକୁ ପ୍ରତି ମୁହୂର୍ତ୍ତରେ ନିଜ କେଂଦ୍ରରୁ ଦୂରକୁ ଦୂରକୁ ଠେଲିନେଇ ଯାଉଛି । ଏହି ବିଚ୍ଛିନ୍ନତାର ପ୍ରଣାଳୀ ପ୍ରଥମେ ୟୁରୋପରେ ଆରଂଭ ହୁଏ ପ୍ରଥମ ମହାଯୁଦ୍ଧ ପରେ, ପ୍ରାୟ ତୃତୀୟ ଦଶକର 'ମାଂନ୍ଦା' ସମୟରେ ଏବଂ କ୍ରମେ ସମ୍ପୂର୍ଣ୍ଣ ହୁଏ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ, ଛିନ୍ନଭିନ୍ନ ପୃଥିବୀର ଶିରାରେ, ଉପଶିରାରେ । ଭାରତବର୍ଷର ମଣିଷ ଏଥିରୁ ବାଦ ଯାଇନାହିଁ । ବରଂ ଏ ଦେଶରେ ତ୍ରୁଟିପୂର୍ଣ୍ଣ ଗଣତଂତ୍ର, ରାଜନୀତିକ ଓ ଆର୍ଥନୀତିକ ଜୀବନରେ ନାନା ଅବ୍ୟବସ୍ଥା, ଦୁର୍ନୀତି ଓ ଅସ୍ଥିରତା; ପୁଣି ପୁଂଜିବାଦୀ ଶୋଷଣନୀତି ଏବଂ ତା ଫଳରେ ସାଧାରଣ ଜୀବନର ଦୁର୍ଗତି, ଏବଂ ମଧ୍ୟବିତ୍ତର ବିଡ଼ଂବନା ପରିସ୍ଥିତିକୁ ଅଧିକ ଜଟିଳ ଓ କରୁଣତର କରିଛି । ଭାରତବର୍ଷର ମଣିଷ ଯେଉଁ ମାନସିକ ଉପଘାତ (ଟେନସନ୍) ଭୋଗୁଛି, ତାହା ତୃତୀୟ ବିଶ୍ୱର କୌଣସି ମଣିଷଠାରୁ କମ୍ ନୁହେଁ, ବରଂ ଅନେକ ବେଶୀ ।

ଆଜି ବାସ୍ତବରେ ମଣିଷ ଯେପରି ଏକ ନିଃସଂଗ ପଥଚାରୀ, ଘୂରି ବୁଲୁଛି କେତେକ ସ୍ମୃତିହୀନ ଦୃଶ୍ୟପଟ ମଧ୍ୟରେ—ଯାହାର କି କୌଣସି ସଂଗତି ନାହିଁ, ପାରମ୍ପର୍ଯ୍ୟ ନାହିଁ । ସବୁ କିଛି ଯେମିତି ଏକ ଦେଖା-ଜଣା, ଦେଖଅଜଣା ଶୂନ୍ୟର ବାୟୁମଂଡଳ । ସେ ସଂଗ ଖୋଜୁଛି, ସାଥୀ ଖୋଜୁଛି, କିଂତୁ ପାଉନାହିଁ । ଏକାକୀ ଛଟପଟ ହେଉଛି । ଏଡ୍‌ୱାର୍ଡ ଆଲବୀଂକ 'ଜୁ ଷ୍ଟୋରି'ରେ ଜେରି କହିଲା ପରି ତାର ଅବସ୍ଥା :

"Don't you see a person has to have some way of dealing with something. If not with people........if not with people....

something....with a bed, with a cockroach, with a mirror... no, that is too hard. that is one of the last steps. With a cockroach, with a ...with a........carpet, with a roll of toilet paper...no, not that either........with a wisp of smoke....with pernographic playing cards, with a strongbox without a lock. With love, with vomiting, with crying, with fury, because the pretty little ladies are not pretty little ladies, with making love with your body which is an act of love and I can prove it, with howling because you are living; with God, how about that ? ?''............

ଏଭଳି 'ବ୍ୟକ୍ତି'ର ଏକମାତ୍ର ଉପଶମ ହୋଇପାରେ ଆତ୍ମହତ୍ୟାରେ, ଯାହା ସାର୍ତ୍ରେ ଏବଂ କାମୁ୍ୟଂକ ସ୍ଥିତିବାଦରେ ଏକ ପର୍ଯ୍ୟାୟରେ ଗଂଭୀର ଆସନ ମାଡ଼ି ବସିଥିଲା, କିଂବା ଆତ୍ମରତିରେ—ଯେଉଁଥିରେ ଗଂର୍କିକ ଭଳି ଲେଖକଂକର ଜଣେ ନାୟକ ମଧ୍ୟ ରକ୍ଷା ପାଇନାହିଁ । ସାହିତ୍ୟ ଏ ଚେହେରାକୁ ଲୁଚ୍ଚାଂଡା ବା କପରି ? ?

ଆଧ୍ୟାତ୍ମିକତାର ବିଫଳତା ଏ ସବୁଥିର ବଡ଼ କାରଣ ବୋଲି କୁହାଯାଉଥାଏ । ଯେଉଁ ଅଧ୍ୟାତ୍ମବିଦ୍ୟା (metaphysics), ମ୍ୟାଜିକ୍ ବା ଯାଦୁବିଶ୍ୱାସ, ମିଥ୍ ଓ ରିଚୁଆଲସ୍‌କୁ ହଟାଇ ତାଂକ ସ୍ଥାନ ଦଖଲ କରି ବସିଥିଲା, ତାହା ଶେଷରେ ବିତାଡ଼ିତ ହୋଇଛି ବିଶ୍ଳେଷଣାତ୍ମକ ବ୍ୟାଖ୍ୟା ପ୍ରଣାଳୀ (empirical approach) ଦ୍ୱାରା ଯାହା ବିଷୟର କେବଳ ବର୍ଣ୍ଣନା ନୁହେଁ, ବର୍ଣ୍ଣନା ଓ ବ୍ୟାଖ୍ୟା ଉଭୟ ଉପରେହିଁ ଗୁରୁତ୍ୱ ଦିଏ, ଏକମୁଖୀ ଦୃଷ୍ଟିକୋଣ ବଦଳରେ ବହୁ-ଅୟତନିକ (multi-dimensional) ସୂକ୍ଷ୍ମଦୃଷ୍ଟି ଦେଇ ପ୍ରତ୍ୟେକ ଜିନିଷକୁ ଦେଖିବାକୁ ଶିଖାଏ ଏବଂ ସେ ବାଟରେ ଦ୍ରବଣତା ସୃଷ୍ଟି କରେ ।

ଆଧୁନିକ କବିତାରେ ଆବେଗ ଓ ସ୍ୱଜ୍ଞା (intuition) ସଂପୂର୍ଣ୍ଣ ବର୍ଜିତ କହିଲେ ଚଳେ । ଆଜି କୌଣସି ପାଶ୍ଚାତ୍ୟ କବି ଧାଡ଼ିଏ ସୁଦ୍ଧା ଆବେଗସଙ୍କୁଳ କବିତା ଲେଖିବାକୁ ଲଜ୍ଜାବୋଧ କରେ । ବୁଦ୍ଧି-ଅଧ୍ୟୁଷିତ ସଭ୍ୟତାରେ ସ୍ୱଜ୍ଞାର କଥା କହିବା ଯେପରି ଏକ ଅପରାଧ ବୋଲି ଧରାଯାଉଛି । ଅଥଚ ହୃଦୟ ହିଁ ହେଉଛି ଆବେଗ ଓ ସ୍ୱଜ୍ଞାର ସ୍ପଂଦନ । ତେଣୁ ବୌଦ୍ଧିକତା ଦ୍ୱାରା ପରାହତ ହୃଦୟବୃତ୍ତି ମଣିଷର ବ୍ୟକ୍ତିତ୍ୱରେ ଗୁରୁତର ସଂକଟ ସୃଷ୍ଟି କରେ—ଯାହା ପାଶ୍ଚାତ୍ୟ କାବ୍ୟକବିତାରେ ପ୍ରଚୁର ଭାବରେ ପ୍ରତିଫଳିତ । ଆଧୁନିକ ଭାରତୀୟ କବିତା ମଧ୍ୟ ଏହି ଦୁର୍ଦ୍ଦଶା ଦ୍ୱାରା ଆକ୍ରାଂତ । ଭାରତବର୍ଷରେ ସର୍ବତ୍ର ଯାଂତ୍ରୀକରଣ, ନଗରୀକରଣ ଓ ପାଶ୍ଚାତ୍ୟକରଣ ପ୍ରକ୍ରିୟା ବହୁ ଦିନରୁ ଆରଂଭ ହୋଇ ସାରିଛି । ତେଣୁ ମାନସିକତା ମଧ୍ୟ ତାର ପ୍ରଭାବରୁ ମୁକ୍ତ ନୁହେଁ ବା ମୁକ୍ତ ହେବା ସଂଭବ ନୁହେଁ ।

ମନସ୍ତତ୍ତ୍ୱ ମଧ୍ୟ କମ ବିଭ୍ରାଟ ସୃଷ୍ଟି କରିନାହିଁ । ଏହା ପ୍ରଚଳିତ ପାରିବାରିକ ସଂପର୍କ ଓ ମୂଲ୍ୟବୋଧକୁ ବିଚାରି କରି ପକାଇଛି ଏବଂ ତାକୁ ସଂଦେହ କରିବାକୁ ଶିଖାଇଛି । ମନୋବିଜ୍ଞାନର ପାଦ୍ରୁ ରଂଜନରଶ୍ମିରେ ମଣିଷ ଅନେକକିଛି ପବିତ୍ର ଜିନିଷକୁ ସନ୍ଦେହ ଓ ଭୟର ଦୃଷ୍ଟିରେ ଦେଖିବାକୁ ଆରଂଭ କରିଛି ଏବଂ ଫଳରେ ମାନସିକ ସ୍ଥିରତା ହରାଇଛି । ଫ୍ରାଏଡ଼ିନଂନ୍ଙ୍କ ବଂଶଗୋତ୍ରୀୟ ଜବାଗୀଜାରମାନେ ତ ତାଂକଠାରେ ପ୍ରଚ୍ଛନ୍ନ ମାତୃଆସକ୍ତି (ଓଡ଼ିପସ୍ କଂପ୍ଲେକସ୍) ଆରୋପ କରିବାକୁ ଛାଡ଼ି ନାହାଂତି, କାରଣ ତା ନ ହୋଇଥିଲେ ସେ ତାଂକଠାରୁ ଅଧିକ ବୟସ୍କା ଜଣେ ନାରୀଂକୁ ବିବାହ କରିବାକୁ ଯାଇଥାଂତେ କାହିଁକି ବା ! ଏଇ ହେଲା ଆମ ଶତକର ମାନସିକତାର ଚେହେରା ।

ଶେଷରେ ଥିଲା ବିଜ୍ଞାନ । ସପ୍ତଦଶ-ଅଷ୍ଟାଦଶ ଶତକର ବିଜ୍ଞାନମାନସିକତା, ଅଧ୍ୟାତ୍ମବିଦ୍ୟାର ସମସ୍ତ ବିଫଳତା ସତ୍ତ୍ୱେ ବି ଏକ ହେତୁବାଦୀ ଧାରା ରକ୍ଷା କରି ପାରିଥିଲା । କିଂତୁ ଆଇନଷ୍ଟାଇନ୍ଙ୍କ ଗୋଟାଏ ଧକ୍କାରେ ସ୍କୁଲ୍ମିଂକ ସୁସମ୍ବଦ୍ଧ ଚୁରମାର ହୋଇଯିବା ପରେ ପ୍ରତିଷ୍ଠିତ ବୈଜ୍ଞାନିକ ବିଶ୍ୱାସ ଦୋହଲିଗଲେ । କାବ୍ୟକବିତାରେ ଦେଖାଦେଲା ପ୍ରଚଂଡ ଅହେତୁକତା । ଗଳ୍ପ-ଉପନ୍ୟାସ ଗଳ୍ପହୀନତା ଦ୍ୱାରା ଆକ୍ରାଂତ ହେଲା । ନାଟକରେ ଦେଖାଦେଲା ଉଦ୍ଭଟତା । ଏଇ ଉଦ୍ଭଟ ରଂଗମଂଚରେ ଏପରି କିଛି ନାହିଁ, ଯାହା ଘଟି ନ ପାରେ । କାର୍ଯ୍ୟକାରଣ ସମ୍ବନ୍ଧ ବୋଲି ଆଉ କିଛି ରହିଲା ନାହିଁ । କୌଣସି କାରଣ ନ ଥାଇ ବି ଯାହାକିଛି ଘଟିଯାଇ ପାରେ । ପ୍ଲାନ୍ସକୋ, ବେକେଟ ପ୍ରଭୃତିଂକ ନାଟକରେ କାରଣ ଅଭାବରେ ମଧ୍ୟ ସମସ୍ତକିଛି ଘଟିଥାଏ । ଏହାର ସମର୍ଥକ ବା ମଣ୍ଡିନାଥମାନଂକର ମଧ୍ୟ ଅଭାବ ନାହିଁ । ରବର୍ଟ୍, ଏନ୍. କୋଥ, ପ୍ଲାନସ୍କୋଂକ ନାଟକ ଉପରେ ଲିଖିତ ତାଂକ ବହିରେ କହିଛଂତି :

"ମାଇକ୍ରୋଫିଜିକସ୍ ପ୍ରମାଣ କରିଛି ଯେ କେତେକ ଧରଣର ଶକ୍ତି ବା ଏନେରଜିରେ ପରୀକ୍ଷଣବିରୋଧୀ ବିପ୍ଳବ (ପ୍ରପର୍ଟି) ବା ଅଣୁ ଏକଗ ରହିପାରଂତି । କ୍ୱାଂଟମ୍ ଫିଜିକସ୍ ଦେଖାଇ ଦେଲାଣି ଯେ ଲଜିକ୍ ବା ନ୍ୟାୟଶାସ୍ତ୍ର ଅନୁସାରେ ଯାହା ଅସଂଭବ, ସେଭଳି ବହୁ ଘଟଣା ଘଟିପାରେ । ଆଣବିକ ପଦାର୍ଥବିଜ୍ଞାନ (ଆଟମିକ୍-ଫିଜିକ୍ସ୍) ସାକ୍ଷ୍ୟ ପ୍ରଦର୍ଶନ କଲାଣି ଯେ ବସ୍ତୁପୁଂଜ ନାସ୍ତିତା ( ବା ନଥିଂଙ୍ନେସ ) ମଧ୍ୟରୁ ନିଜ ନିଜକୁ ସୃଷ୍ଟି କରିପାରଂତି । ଆଇନଷ୍ଟାଇନ୍ ଗୋଟିଏ ଗୁପୁଡ଼ାରେ ସୁକ୍ଲିଡ଼ଂକୁ ଅକାମୀ କରିଦେଇଛଂତି ଏବଂ ସ୍ଥାନ ଓ କାଳର ପ୍ରଚଳିତ ଧାରଣାକୁ ବଦଳାଇ ଦେଇଛଂତି । ଏ ସବୁର ଫଳାଫଳ ବୈଜ୍ଞାନିକ ଓ ପେଶାଦାର ଲଜିସିଆନଂକ ମହଲରେ ଯାହା ହେଉନା କାହିଁକି ସାଧାରଣ ବୁଦ୍ଧିଜୀବୀ ମନରେ

କଂରୁ ଏସବୁର ପ୍ରଭାବ ଓ ତାତ୍ପର୍ଯ୍ୟ ପ୍ରଚଂଡ ବିପ୍ଲବ ସୃଷ୍ଟି କରିଛି ଏବଂ ଲିଜିକାଲ ଭାବନାର ମୂଳଦୁଆକୁ ଦୋହଲାଇ ଦେଇଛି । ନିଜେ ବୈଜ୍ଞାନିକମାନେହିଁ--ଯେଉଁମାନେ କି ହେତୁବାଦର ପ୍ରଧାନ ସ୍ତମ୍ଭ ଥିଲେ—ହେତୁବାଦ ଉପରେ ପ୍ରଚଂଡ କୁଠାରାଘାତ କରିଛଂତି ।"

ଜୋଅ ପ୍ରତିପାଦନ କରିଛଂତି ଯେ ଉଦ୍ଭଟ ଭିତରେ ଥିବା ଅହେତୁ ଅହେତୁକ ନୁହେଁ । ଏହା ରହସ୍ୟବାଦୀର ଅତିହେତୁକ ଅହେତୁକତା ନୁହେଁ, ଏହା ବରଂ ହେତୁବାଦୀର ଇନ୍‌ଫ୍ରା-ହେତୁକ ବା ମୌଳ ଅହେତୁକତା ।

"It is not the super-rational irrationality of the mystic. It is the infra-rational irrationaliy of the rationalist."

ଆଧୁନିକ ଚିତ୍ରକଳା ଉପରେ ମଧ୍ୟ ଅ-ହେତୁବାଦର ପ୍ରଭାବ ଯଥେଷ୍ଟ ପଡ଼ିଛି । ନିର୍ବିଶେଷ ବା ଆବଷ୍ଟ୍ରାକ୍ଟ୍ ଆର୍ଟ, ବିଶେଷତଃ ଏହାର ସଂଗଠ ଅତିବାସ୍ତବବାଦୀ (ସୁରିଅଲିଷ୍ଟ) ଚିତ୍ରକଳା, ଯାହା ବସ୍ତୁ ବା objectକୁ ଅନୁକରଣ ନ କରି ସଂଗୀତ ଓ ସ୍ଥାପତ୍ୟ ପରି, ନିଜସ୍ୱ ଉପକରଣରୁ ଆପଣା ପ୍ରଭାବ ସଂଗ୍ରହ କରିବାକୁ ବଦ୍ଧପରିକର ହୋଇଥିଲେ ; ଏବଂ ପ୍ରାକୃତିକ ଫର୍ମକୁ ବାଦଦେଇ ଏକ ଅଣଐତିହାସିକ ତଥା ବର୍ଣ୍ଣନାତ୍ମକ ଗୁଣାବଳୀ ଦ୍ୱାରା ଆର୍ଟକୁ ମଂଜିତ କରିବାର ପକ୍ଷପାତୀ ଥିଲେ, ଏଥିରୁ ନୂତନ ପ୍ରେରଣା ଓ ଦିଗ୍‌ଦର୍ଶନ ପାଇଲେ । ଠିକ୍ ଯେମିତି ଅମ୍ଫୋନ୍ ଡଆନ୍ ଜ୍ୟାମିତି, ଗଣିତ ଅଭିଜ୍ଞତାରୁ ସ୍ୱାଧୀନ ବୋଲି ସାବ୍ୟସ୍ତ କଲା, ଚିତ୍ର ସେହିପରି କଳାତ୍ମକ ଅନୁକରଣରୁ ନିଜକୁ ମୁକ୍ତ କରିବାକୁ ସଚେତନ ଚେଷ୍ଟା କଲା । ସେମାନେ ପିଓର ଆର୍ଟର ଧ୍ୱନିକୁ କାର୍ଯ୍ୟରେ ରୂପାଂତରିତ କରିବାକୁ ଅପୂର୍ବ ସୁଯୋଗ ପାଇଲେ । ଆବଷ୍ଟ୍ରାକ୍ଟ ଆର୍ଟ ବସ୍ତୁର ଆକୃତିକୁ ଗୁଡ଼ି ନିର୍ଯ୍ୟାସ ପ୍ରତି ଅଧିକ ଆକୃଷ୍ଟ ଏବଂ ଐତିହାସିକ ସମୟ ଓ ସ୍ଥାନ ପରିବର୍ତ୍ତେ ଏକ ଅଖଂଡ, ଅବିଶ୍ୱ-ରଚନା ସୃଷ୍ଟି କରିବାରେ ଆଗ୍ରହୀ । ( ମଡର୍ଣ୍ଣ ଆର୍ଟ, ମେଥ୍ୟୁର ହ୍ୱାପିରୋ, ଲଂଡନ, ୧୯୬୮) । ନିଷ୍କାମ ସ୍ୱତଃପ୍ରବଣତା—ଯାହା ପିଲା ବା ପାଗଳଂକ ଦ୍ୱାରା ଅଂକିତ ଚିତ୍ରାବଳୀରେ ଦେଖାଯାଏ, ଯାହା ଉପରେ ଅତଲ୍‌ଟ ବ୍ୟକ୍ତି ବା ସମାଜର କୌଣସି ଛାପ ନାହିଁ, ତାହା ନିର୍ବିଶେଷ ଚିତ୍ରକଳାର ଧ୍ୟେୟ ହେଲା । (ଆଲ୍‌ଫ୍ରେଡ୍ ଏଚ. ବ୍ରାର୍‌ଂକ ପ୍ରଣୀତ କ୍ୟୁବିଜମ୍ ଏଂଡ୍ ଆବଷ୍ଟ୍ରାକ୍ଟ ଆର୍ଟ, ନ୍ୟୁୟର୍କ, ୧୯୩୬ ଦ୍ରଷ୍ଟବ୍ୟ) ।

ଆଜି ପାଶ୍ଚାତ୍ୟ ସାହିତ୍ୟ ଓ ଚିତ୍ରକଳାରେ ଅହେତୁବାଦର ସ୍ପଷ୍ଟ ପ୍ରଭାବ ଲକ୍ଷଣୀୟ । ଭାରତବର୍ଷରେ ଏବଂ ଓଡ଼ିଶାରେ ସାହିତ୍ୟିକ ଏବଂ ଚିତ୍ରଶିଳ୍ପୀମାନେ ମଧ୍ୟ

ଏଥିରୁ ମୁକ୍ତ ନୁହଂନ୍ତି । ପାଶ୍ଚାତ୍ୟରେ ଯଂତ୍ରସଭ୍ୟତାରେ ବିକ୍ଷୁବ୍ଧ ବ୍ୟକ୍ତିଜୀବନର ସଂଘର୍ଷ ଓ ସଂତାପ ତଥା ଉପଘାତରୁ (ଟେନସନ୍) ରକ୍ଷା ପାଇବା ପାଇଁ ପ୍ରାଚ୍ୟଦେଶୀୟ ଆଧ୍ୟାତ୍ମିକତା ଓ ରିଚ୍ୱାଲସ୍ ବା ଧର୍ମୀୟ କର୍ମକାଣ୍ଡ ଆଡ଼କୁ ଢଳୁଥିବାର ଦେଖାଯାଉଛି, ଯେପରି କୃଷ୍ଣ-କନସସ୍‌ନେସ, ବିଟଲସ୍ ଆଦି ସଂପ୍ରଦାୟ ବା ଗୋଷ୍ଠୀ । ସେମାନେ ଆଧ୍ୟାତ୍ମିକତା ମଧ୍ୟରେ ବସ୍ତୁବାଦର ଚରମ ରୂପାଂତର ଲୋଡ଼ୁଛଂତି ।

ସମାଜବାଦୀ ଦେଶମାନଂକରେ, ସାହିତ୍ୟରେ କିଂତୁ ଏଭଳି ନେତିମୂଳକ ଦୃଶ୍ୟପଟ ମିଳେନାହିଁ । (ଯଦିଓ ପାଷ୍ଟରନାକ୍‌ଂକ 'ଡକ୍ଟର ଜିଭାଗୋ'ର ବହୁ ଅସ୍ତିତ୍ୱବାଦୀ ଚରିତ୍ର ବୋଲି କୁହାଯାଇ ପାରିବ) । ସେ ଦେଶମାନଂକର ସାହିତ୍ୟରେ ସାମାଜିକ ଅଂଗୀକାରର ସ୍ପଷ୍ଟ ଚିହ୍ନ ମିଳେ । ଏମାନଂକର 'ସମାଜବାଦୀ ବସ୍ତୁବାଦ' ସାହିତ୍ୟରେ ଏକ ନୂତନ ଜୀବନ-ଅଭିମୁଖ୍ୟ ସୃଷ୍ଟି କରିବାକୁ ସମର୍ଥ ହୋଇଛି । (ଚୀନର ସାଂସ୍କୃତିକ ବିପ୍ଳବ କିଂତୁ କଳା ଓ ସଂସ୍କୃତିରେ ରାଷ୍ଟ୍ରୀୟ ହସ୍ତକ୍ଷେପର ନଗ୍ନ ନମୁନା ବହନ କରେ । ସୁଖର ବିଷୟ, ଚୀନର ବର୍ତ୍ତମାନ ନେତୃତ୍ୱ ଏହା ସଂସ୍କୃତି-ବିରୋଧୀ ବୋଲି ଘୋଷଣା କରିଛି ଓ ସେଥି ସହିତ ସଂଶ୍ଳିଷ୍ଟ 'gang of four'କୁ କାଠଗଡ଼ାରେ ଆଣି ଛିଡ଼ା କଲଣି !)

ଏଇ ପରିସ୍ଥିତି ଓ ପରିପ୍ରେକ୍ଷୀରେ ଆଧୁନିକ ଭାରତୀୟ ସାହିତ୍ୟ, ବିଶେଷ କରି ଓଡ଼ିଆ ସାହିତ୍ୟ ଯେପରି ଜାତୀୟ ଜୀବନର ମହାସ୍ରୋତ ସହିତ ସମନ୍ୱିତ ହୋଇ ନୂତନ ସାର୍ଥକତା ହାସଲ କରେ, ସେଥିପ୍ରତି ସତର୍କ ଓ ସଚେତନ ଦୃଷ୍ଟି ଦେବାକୁ ଆମେ ଦେଶର ସାହିତ୍ୟିକ ତଥା ଶିଳ୍ପୀମାନଂକୁ ଆବେଦନ କରୁ । ଆମର ଆଶା ଓ ବିଶ୍ୱାସ, ଆଧୁନିକ ସାହିତ୍ୟ ଓ ଶିଳ୍ପ ଜାତୀୟ ଜୀବନର ବୃହତ୍ତର ଅଂଶର ଆଶା-ଆକାଂକ୍ଷା ଓ ରୁଚିପିପାସା ପୂରଣ କରିବାକୁ ନିଶ୍ଚୟ ସମର୍ଥ ହେବ ଏବଂ ନିଜର ଐତିହାସିକ ନିୟତି ତଥା ଭୂମିକା ସଂବଂଧରେ ସର୍ବଦା ସଚେତନ ରହିବ । *

□ □ □

* ଦିଗଂତ : ସେପ୍‌ଟେଂବର—ଡିସେଂବର/୧୯୮୦

# ଆଧୁନିକତାର ସଂଜ୍ଞା ଓ ସ୍ୱରୂପ

[ପରଂପରାକୁ 'କୂଳ' ଏବଂ 'ଆଧୁନିକତା'କୁ 'ଶୀଳ' କୁହାଯାଇ ପାରିବ କି ? ଆଧୁନିକତାର ସଂଜ୍ଞା ଓ ସ୍ୱରୂପ କଣ ? ଏହା ପରଂପରାର ଐତିହାସିକ ରୂପାଂତର ନା କେବଳ ନୂତନତାର ଝଲକ ମାତ୍ର ? ]

'ଆଧୁନିକତା'ର ସଠିକ ସଂଜ୍ଞା ନିରୂପଣ କଷ୍ଟ । ତେଣୁ ଏହାର କୌଣସି ନିର୍ଦ୍ଦିଷ୍ଟ ସଂଜ୍ଞା ପ୍ରକରଣ ଏ ପର୍ଯ୍ୟନ୍ତ ହୋଇନାହିଁ କୁହାଯାଇପାରେ । ତଥାପି ବହୁ ମନୀଷୀ ଓ ସମାଲୋଚକ ନିଜ ନିଜ ଦୃଷ୍ଟିକୋଣରୁ ଆଧୁନିକତା କହିଲେ କଣ ବୁଝାଏ ବା କଣ ନ ବୁଝାଏ, ତାର ଆଲୋଚନା କରିଛନ୍ତି ।

ସିମଲାଠାରେ ଇଂଡିଆନ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଆଡ୍‌ଭାନ୍‌ସଡ୍ ଷ୍ଟଡ଼ିଜ୍‌ଙ୍କ ଆନୁକୂଲ୍ୟରେ ୧୯୬୭ ମସିହା ଅକ୍ଟୋବର ମାସ ୨ ତାରିଖରୁ ୧୫ ତାରିଖ ପର୍ଯ୍ୟନ୍ତ "ଆଧୁନିକତା ଓ ସମକାଳୀନ ଭାରତୀୟ ସାହିତ୍ୟ" ବିଷୟବସ୍ତୁ ଉପରେ ଏକ ଆଲୋଚନାଚକ୍ର ବା ସେମିନାର ଅନୁଷ୍ଠିତ ହୋଇଥିଲା । ଏଥିରେ ଦେଶର ବହୁ ସୁଧୀ, ଲେଖକ ଓ ସାହିତ୍ୟକାର ସମବେତ ହୋଇ ନିଜ ନିଜ ମତାମତ ପ୍ରକାଶ କରିଥିଲେ ଏବଂ ନିବନ୍ଧ ପାଠ କରିଥିଲେ ।

ଇନ୍‌ଷ୍ଟିଚ୍ୟୁଟର ନିର୍ଦ୍ଦେଶକ ତଥା ପ୍ରଖ୍ୟାତ ଲେଖକ ଡକ୍ଟର ନିହାରରଂଜନ ରାୟ ଏହି ଆଲୋଚନାଚକ୍ର ଉଦ୍‌ଘାଟନ ଉପଲକ୍ଷରେ ଯେଉଁ ଭାଷଣ ଦେଇଥିଲେ, ସେଥିରେ ସେ ଆଧୁନିକତାର ଏକ ମୋଟାମୋଟି ସଂଜ୍ଞା ଦେବାକୁ ଚେଷ୍ଟା କରିଛନ୍ତି । ଏହା ସର୍ବସମ୍ମତ ନ ହୋଇ ପାରେ, ମାତ୍ର ନିଶ୍ଚୟ ପ୍ରଣିଧାନଯୋଗ୍ୟ ।

ଡକ୍ଟର ନିହାରରଂଜନ ରାୟଙ୍କ ମତାନୁସାରେ ଆଧୁନିକତା ଓ ପରଂପରା ମଧ୍ୟରେ ଏକ ଜୈବିକ ଓ ଅଂତର୍ନିହିତ ଯୋଗସୂତ୍ର ରହି ଆସିଛି ଏବଂ ରହିବ । ଆଧୁନିକତାର ଅର୍ଥ କେବଳ 'ନୂତନତା' ନୁହେଁ । ଆଜି ଯାହା ନୂତନ କାଲି ତାହା 'ପରଂପାରଣ'ର ଅନ୍ତର୍ଗତ ହୋଇପାରେ । ଉଦାହରଣ ସ୍ୱରୂପ, ଆଜି ଭାରତବର୍ଷରେ ପ୍ରଚଳିତ ବହୁ ବୃକ୍ଷଲତା, ଫଳ, ଫୁଲ, ଶାକ ସବ୍‌ଜି, ଏବଂ ଦୈନଂଦିନ ବ୍ୟବହାର୍ଯ୍ୟ ସାମଗ୍ରୀ, ଯଥା ବାଷ୍ପୀୟ ଓ ତାପଜ ଶକ୍ତି, ବିଦ୍ୟୁତ୍, ଯାନବାହନ ଏବଂ ପ୍ଲାଷ୍ଟିକ୍ ଓ ନାଇଲନ୍‌ଠାରୁ ଆରଂଭ କରି ପୋଷାକ ପରିଚ୍ଛଦ, ଖାଦ୍ୟପେୟ ପର୍ଯ୍ୟନ୍ତ ବିଦେଶ ବାହାରୁ ଆସିଥିଲା । ମାତ୍ର ସେ ସବୁ ଆମ ମାଟି ଓ ଆମ ଜୀବନରେ ଦୃଢ଼ମୂଳ ହୋଇଗଲଣି । ଆମ ଜୀବନ ଧାରଣରେ ବର୍ତ୍ତମାନ ତାହା କେବଳ ସହାୟକ ନୁହେଁ, ଆମ ଜୀବନ ଓ ଚେତନାର ଅଂଶ ଭୁକ୍ତ ହୋଇ ଯାଇଲଣି ।

ଆମେ ସେଥିରୁ ବଂଚିବାର ଶକ୍ତି ପାଉଁ, ପ୍ରେରଣା ପାଉ । କେହି ତହିଁର ବୈଦେଶିକତା ସଂବନ୍ଧରେ ପ୍ରଶ୍ନ ଉଠାଂତି ନାହିଁ । ସେ ସମସ୍ତ ଆଜି ଆମର ଜୀବନ ଧାରଣର ମୌଳିକ ଉପାଦାନରେ ପରିଣତ ହୋଇଗଲଣି । ତେଣୁ ଆଧୁନିକ ଚେତନା

* 'Modernity and Contemporary Indian Literature' Published by The Indian Institute of Advanced Study, Simla, 1968.

କହିଲେ ଏ ସମସ୍ତର ସମନ୍ୱୟ ଓ ସମୀକରଣକୁ ହିଁ ବୁଝିବାକୁ ହେବ । ଯାହା ଜୀବନ-ଚର୍ଯାର ଅଂଶ, ସେଥିରେ ପ୍ରାଚୀନ ବା ଆଧୁନିକତାର ବାଛ ବିଚାର ନାହିଁ, ବରଂ ଅନ୍ତ ବିକାଶର ମହାସ୍ରୋତ ସହିତ ସମନ୍ୱିତ ଏକ ଅବିଚ୍ଛିନ୍ନ ଧାରା ।

ଜୀବନରେ ଯେପରି ସାହିତ୍ୟରେ ମଧ୍ୟ ସେହିପରି ପରସ୍ପର ବନ୍ଧା ହୋଇଛି । ଜୀବନ ଗୋଟାଏ ଦିଗରେ ଯିବ ଏବଂ ସାହିତ୍ୟ ଅନ୍ୟ ଦିଗରେ ଯିବ—ଏହା ସମ୍ଭବ ନୁହେଁ । ସାହିତ୍ୟରେ ବର୍ତ୍ତମାନ ଆମ ବାସ୍ତବ ଜୀବନର ପ୍ରତିଟି ଉପକରଣ ପ୍ରତି ଆମେ ସଚେତନତା ଓ ସଜାଗତା ପ୍ରକାଶ କରୁଛୁ ଏବଂ ଆମର ପ୍ରଚଳିତ ଔତ୍ପାଦିକ ସମ୍ପର୍କ ଏବଂ ସେଥିରୁ ସଂଭୂତ ଧାନଧାରଣା, ବିଚାର ଓ ମାନସିକତାର ପ୍ରତିଫଳନ ଦେଖୁଛୁ ଓ ଘଟାଉଛୁ । ଏହା କୃତ୍ରିମ ପ୍ରକ୍ରିୟାରେ ହୋଇ ନ ପାରେ । ସାହିତ୍ୟ ଆମର ଗଭୀର ଜୀବନବୋଧ ଓ ଜୀବନଜିଜ୍ଞାସା ନ ହୋଇ ଅଉ କଣ ହେବ ?

ଡକ୍ଟର ରାୟ ପରଂପରାକୁ 'କୁଳ' ଏବଂ ଆଧୁନିକତାକୁ 'ଶୀଳ' ସଂଗେ ତୁଳନା କରିଛଂତି । ଏ ଦୁଇଟି ଜିନିଷ ପରସ୍ପରଠାରୁ ବିଚ୍ଛିନ୍ନ ନୁହଂତି । ଏ ଦୁହିଂକ ମିଶ୍ରଣରୁ ହିଁ 'କୁଳଶୀଳ' ଶବ୍ଦର ଜନ୍ମ, ଯେଉଁଥିରୁ ବ୍ୟକ୍ତିର ସଂପୂର୍ଣ୍ଣ ପରିଚୟ (identity) ବା ବ୍ୟକ୍ତିସତ୍ତା ର ପ୍ରମାଣ ମିଳେ । ଜଣେ ବ୍ୟକ୍ତି ତାର 'କୁଳ' ନିର୍ଦ୍ଧାରଣ କରିପାରେ ନାହିଁ । ଆମେ ସମସ୍ତେ ଜାଣୁ କୁଳ ଅର୍ଥ ଉତ୍ତରାଧିକାର—ଜୈବ (biological) ଏବଂ ସାଂସ୍କୃତିକ ଉଭୟ ପ୍ରକାର ଉତ୍ତରାଧିକାର । ଏହାକୁ ଜଣେ ଜନ୍ମସୂତ୍ରରୁହିଁ ପାଇଥାଏ । ଏହାକୁ ସେ ନିଜ ରକ୍ତରେ, ଭୌତିକ ଶରୀରର ପ୍ରତ୍ୟେକ ତନ୍ତୁରେ ଏବଂ ଚିଂତା, ଭାବନା, ମଗ୍ନଚେତନା ଏବଂ ସ୍ୱପ୍ନ, ପ୍ରତୀକ, ରୂପକଳ୍ପ; ଏବଂ ଖାଦ୍ୟ-ପେୟ, ପୋଷାକ ପରିଧେୟ, ଚାଲିଚଳଣ, ଆଚାର ବ୍ୟବହାର ପ୍ରଭୃତିରେ ପୁରୁଷାନୁ-କ୍ରମେ ଲାଭ କରିଥାଏ ।

ଶୀଳ ହେଉଛି ବ୍ୟକ୍ତିର ପୌରୁଷ । ମଣିଷ ଏକ ପୂର୍ବନିର୍ଦ୍ଦିଷ୍ଟ ପରିସ୍ଥିତିରେ, ନାନା ସମସ୍ୟା ଓ ଆହ୍ୱାନର ସମ୍ମୁଖୀନ ହୋଇ ଯେଉଁ ନିଜସ୍ୱ ଅଭିଜ୍ଞତା ହାସଲ କରି ନିଜ ସ୍ଥିତିରେ ପରିବର୍ତ୍ତନ ଘଟାଏ—ନିର୍ଦ୍ଦିଷ୍ଟ ସ୍ଥାନ ଓ କାଳ ମଧ୍ୟରେ ନିଜର ସ୍ଥିତିକୁ ବଦଳାଇବାକୁ ଯାଇଁ ଯେଉଁ ଜ୍ଞାନ ଓ ବୈଶିଷ୍ଟ୍ୟ ହାସଲ କରେ ଏବଂ ଯେଉଁ ପ୍ରକାର ଚିଂତା ଓ କର୍ମ ପ୍ରଣାଳୀ ଅନୁସରଣ କରେ, ସେ ସବୁର ସମନ୍ୱିତ ଓ ସାମଗ୍ରିକ ରୂପ ହେଉଚି 'ଶୀଳ' ।

ଏଠାରେ 'ମହାଭାରତ'ର କର୍ଣ୍ଣଂକ ଉଦାହରଣ ଦିଆ ଯାଇପାରେ । ତାଂକ ବିରୋଧରେ ନୀଚ କୁଳଜାତ ଅଭିଯୋଗ ହେବାରୁ ସେ ଦୃପ୍ତ କଂଠରେ ତହିଁର ଉତ୍ତର ଦେଇଥିଲେ :

"ସୂତ ବା ସୂତପୁତ୍ରବା ଯୋ ବା କୋ ବା ଭବମ୍ୟହମ୍
ଦୈବାୟତ୍ତମ କୁଳେ ଜନ୍ମ ମମାୟତ୍ତନ୍ତୁ ପୌରୁଷମ୍ ।"

"ମୁଁ ସୂତ (ରଥ ଚାଳକ) ହୁଏ ବା ସୂତପୁତ୍ର ହୁଏ, ମୁଁ ଯିଏ ବା କିଏ ହୁଏ, ମୋ ଜନ୍ମ ଦୈବ ବା ବିଧିନିର୍ଦ୍ଦେଶିତ । ତାହା ମୋ ହାତରେ ନାହିଁ । ଯାହା ମୋ ହାତରେ ଅଛି ତାହା ହେଉଛି ମୋର ପୌରୁଷ ।"

ତେଣୁ 'ଶୀଳ'କୁ ଆମେ ସଂକୁଚିତ ଅର୍ଥରେ ପୌରୁଷ କହିପାରିବା । ସାହିତ୍ୟରେ ଏହି କୁଳ-ଶୀଳର ଦ୍ୱନ୍ଦ୍ୱ-ସମନ୍ୱୟ ଆବହମାନ କାଳରୁ ହିଁ ଚାଲି ଆସିଛି ଏବଂ ଚାଲିଥିବ । ଇତିହାସର ପଛପଟଟା ହିଁ ଦ୍ୱନ୍ଦାକୀର୍ଣ୍ଣ । ଜୀବନରେ ଯେପରି ସାହିତ୍ୟରେ ମଧ୍ୟ ସେପରି । ତାକୁ ସଦିଚ୍ଛା ବା ସ୍ତୁତି ବାଚନରେ ବନ୍ଦ କରିବାକୁ ଚେଷ୍ଟା କରିବା ବୃଥା । ସେ ସଦିଚ୍ଛାର ସଚ୍ଚୋଟତାରେ ଯଦିଓ କାହାରି ସନ୍ଦେହ ନାହିଁ ।

ସାହିତ୍ୟର ଆଙ୍ଗିକ ଓ ଆତ୍ମିକ, ଆଧାର **(form)** ଓ ଆଧେୟ **(contents)** ସବୁ କିଛିରେ ପୁରାତନ ସଂଗରେ ନୂତନର ବିରୋଧ-ମିଳନ-ସମନ୍ୱୟର ପ୍ରତିଛବି ସବୁ ଦେଶରେ, ସବୁ ଯୁଗର ସାହିତ୍ୟରେ ପ୍ରତିଫଳିତ । କିନ୍ତୁ କେବଳ ନୂତନତାର ଝଲକ ଆଧୁନିକତା ନୁହେଁ । ଏ ଝଲକ ଅଚିରସ୍ଥାୟୀ ।

ରବୀନ୍ଦ୍ରନାଥ ବିଂଶ ଓ ତିରିଶ ଦଶକର ଇଂରାଜୀ କବିତାକୁ ଗ୍ରହଣ କରିପାରି ନ ଥିଲେ; ବରଂ କଟୁ ଭାଷାରେ ସମାଲୋଚନା କରିଥିଲେ । ତାଙ୍କ ମତରେ ଏ ସବୁ କବିତା ପରଂପରା-ପରିପଂଥୀ, ତେଣୁ ସର୍ବମାନବୀୟ ଆବେଦନରୁ ବଂଚିତ । ରବୀନ୍ଦ୍ରନାଥଙ୍କ ଭାଷାରେ ଆନନ୍ଦଲୋକର ଉତ୍ସ ପରଂପରା ମଧ୍ୟରେ ହିଁ ନିହିତ— ଯାହା ସୁଦୂର ଅତୀତରୁ ଆମକୁ ହସ୍ତାଂତରିତ କରା ହୋଇ ଆସୁଛି । ଦେଶ କାଳର ସୀମା ଅତିକ୍ରମ କରି ଏହା ସମସ୍ତ ମଣିଷ ଜାତିକୁ ଚିରକାଳ ଆନନ୍ଦ ଦେଇ ଆସୁଛି । ତାଙ୍କର ଗଭୀର ବିଶ୍ୱାସ ଥିଲା : "irrespective of country of origin, literature upholds that the world of delight ( *Anandam* )is the world of tradition."

ବିଂଶ ଓ ତିରିଶ ଦଶନ୍ଧିର ଇଂରାଜୀ କବିତା ସଂବନ୍ଧରେ ରବୀନ୍ଦ୍ରନାଥଙ୍କ ପ୍ରତିକୂଳ ମନୋଭାବ ସାହିତ୍ୟରେ ଅତୀତ ଓ ବର୍ତ୍ତମାନର ଦ୍ୱନ୍ଦ୍ୱ-ସମନ୍ୱୟ ପ୍ରଣାଳୀ ସଂବନ୍ଧରେ ତାଙ୍କର ସଚେତନତା ସଂପର୍କରେ ପ୍ରଶ୍ନ ସୃଷ୍ଟି କରେ । ସେ କହିଛନ୍ତି :

"It has repeatedly struck me that modern English poetry is modern with a vengenance; it is overbearingly new; it is revolutionary in its rejection of whatever is

traditional. The iconoclastic youth may be intoxicated with this new spirit of modernity but its sheer modernism is a sign of its impermance."

ମହାଭାରତ, ଶକୁନ୍ତଳା, ହୋମରଙ୍କ ଅମର କୃତି, ଡାଣ୍ଟେ, ସେକ୍ସପିଅର, ଗେଟେ ଏବଂ ଏପରିକି ନିକଟ ରବୀନ୍ଦ୍ରନାଥ ମଧ୍ୟ ଚିରନ୍ତନ ଆନନ୍ଦର ଉତ୍ସ ଏବଂ ମାନବୀୟ ସୃଜନଶୀଳତାର ପ୍ରତୀକ ହୋଇ ପାରି ନାହାଁନ୍ତି କି ପରଂପରାର ମହାନ ଐତିହ୍ୟ ସଂଗେ ସମସାମୟିକ ଚେତନା ଓ ସାମାଜିକ ଉପଲବ୍ଧିର ସାର୍ଥକ ସମନ୍ୱୟ ସାଧନ କରି ପାରିଛନ୍ତି ବୋଲି ? ସଂଗେ ସଂଗେ ଏଲିୟଟ, ପାଉଣ୍ଡ୍, ଅଡେନ, ଡିଲନ୍ ଥୋମାସ୍ ପ୍ରଭୃତି ମଧ୍ୟ ମଣିଷ ସମାଜର ସ୍ମରଣୀୟ ହୋଇ ରହିଛନ୍ତି ଓ ରହିବେ—ପରଂପରାର ରୂପାନ୍ତର ସାଧନରେ ସମକାଳୀନ ଚେତନାର ସଫଳ ପ୍ରୟୋଗ ଓ ପ୍ରତିନିଧିତ୍ୱ କରି ପାରିଥିବା ଯୋଗୁଁ ।

ଆମ ସମୟର ଜଣେ କୃତୀ ସାହିତ୍ୟକାର ସାର୍ତ୍ରେ ସାହିତ୍ୟକୁ ଏକ "ଚିରନ୍ତନ ବିପ୍ଳବ" ବୋଲି କହିବା ମୂଳରେ ଏହି ସତ୍ୟ ନିହିତ ଅଛି ଯେ ଶିଳ୍ପ ଓ ସାହିତ୍ୟରେ ପୁରାତନ ସହିତ ବର୍ତ୍ତମାନର ଏକ ସଂଘର୍ଷ ଅନବରତ ଚାଲିଛି ଏବଂ ପରିବର୍ତ୍ତନ ହିଁ ଏହାର ଅନିବାର୍ଯ୍ୟ ପରିଣାମ । ସେ କହନ୍ତି ଯେ ସାହିତ୍ୟରେ ପ୍ରତିଷ୍ଠିତ ବା କ୍ଷମତାସୀନ ଆକୃତି (form) ସଂଗେ ଏକ ନୂଆ ଅନୁକରଣଶୀଳ ଆକୃତିର ସଂଗ୍ରାମ ସର୍ବଦା ବର୍ତ୍ତମାନ । ୧୯୬୦ ମସିହାରେ ସାର୍ତ୍ରେ କହିଥିଲେ : Art is a permanent revolution.

ସାର୍ତ୍ରେଙ୍କ ମତବାଦର ବ୍ୟାଖ୍ୟା ପ୍ରସଂଗରେ New Statesmanର ସଂପାଦକ David Caute କହନ୍ତି :

"Sartre regarded the essence of art as transcedance—by which he did not mean escape or evasion. He endorsed Malraux's view that all creation is, at its origin, the struggle between the form which is in power and an imitative form."

# ଆଧୁନିକତାର ବିଗ୍ରହ

*(Concepts of Modernity)*

ପ୍ରଫେସର ଏ. ଜାମାଲ ଖ୍ୱାଜା ଆଧୁନିକତାର ବିଗ୍ରହ ବିମର୍ଶ (concepts) ନିର୍ଦ୍ଧ କରିବାକୁ ଯାଇ କେତେଗୁଡ଼ିଏ ସୂତ୍ରର ଅବତାରଣା କରିଛନ୍ତି :

୧ । Natural and Intracosmic Causation : ଏ ସଂପର୍କରେ ସେ କହନ୍ତି ଯେ ଏହା ହେଉଛି ଆଧୁନିକ conceptual frame workର ମୂଳଭୂଅ । "It implies that event has a cause located within the total system of event rather than outside the system, and that this total system is an interrelated cosmos having stable pattern of events.

ଏହାର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ ପ୍ରଫେସର ଖ୍ୱାଜା କହନ୍ତି—"The causes of events are to be located in the event-nexus rather than in some trans-nexus, or, in other words, in a supernatural or super-cosmic nexus.

୨ । ଦ୍ୱିତୀୟ ବିଗ୍ରହଟି ହେଉଛି—Empirical Explanation : ଏହା ପ୍ରଥମ ବିଗ୍ରହର ନ୍ୟାଯ୍ୟ ଅନୁକ୍ରମ । ଯଦି ପ୍ରାକୃତିକ କାରଣ-ନିବଂଧ ବିଶ୍ୱ-ଜନୀନ, ତାହାହେଲେ ସେହି ଘଟନାପୁଂଜର ପାରସ୍ପରିକ ସଂବଂଧ ସଂପର୍କରେ ଜ୍ଞାନ ଲାଭ କରିବା ଅପରିହାର୍ଯ୍ୟ । କେବଳ ଘଟଣା ଗୁଡ଼ିକର ଯଥାଯଥ ବର୍ଣ୍ଣନା ଯଥେଷ୍ଟ ନୁହେଁ । ଘଟଣାବଳୀର ନିସ୍ପଂତ୍ତି କରିବାକୁ ହେଲେ କେବଳ କେତୋଟି ଅସଂଲଗ୍ନ ଘଟଣାର ବର୍ଣ୍ଣନା କଲେ ଚଳିବ ନାହିଁ । ବର୍ଣ୍ଣନା ଓ ବ୍ୟାଖ୍ୟା ଉଭୟ ଦରକାର । ଅବଶ୍ୟ କାବ୍ୟିକ, ଆଧିଭୌତିକ (metaphysical), ଧର୍ମୀୟ ଏବଂ ଅତିକଥା-ଜନିତ (mythical) ବର୍ଣ୍ଣନା ତାର ନିଜସ୍ୱ ପଦ୍ଧତି ଓ ଲଜିକ୍ ଅନୁସରଣ କରିବ । ସେସବୁକୁ ଗୋଟିଏ ଗୁଚ୍ଛରେ ପକାଯାଇ ପାରିବ ନାହିଁ । ସେ ଯାହାହେଉ ମାନବୀୟ ଅଭିଜ୍ଞତାର ପରୀକ୍ଷା ଓ ଏକୀକରଣ ସୂତ୍ରରେ ଘଟନାବଳୀର ପରୀକ୍ଷା ପ୍ରୟୋଜନ । ପ୍ରାୟ ଦୁଇ ହଜାର ବର୍ଷରୁ ଅଧିକ କାଳ ହେଲା ମ୍ୟାଜିକ୍ ବା କମିସ୍ମାକୁ ସ୍ଥାନଚ୍ୟୁତ କରି ତା ସ୍ଥାନ ଆଧିଭୌତିକ ବ୍ୟାଖ୍ୟା ମାଡ଼ିବସିଥିଲା । ବର୍ତ୍ତମାନ ଆଧିଭୌତିକ ବ୍ୟାଖ୍ୟାର (metaphysical explanation) ସ୍ଥାନ empirical explanation (କାର୍ଯ୍ୟକାରଣ ସମନ୍ୱିତ ବ୍ୟାଖ୍ୟା) ଅଧିକାର କରି ବସିଲଣି ।

୩ । Universal Evolution : ସାର୍ବିକ ବିବର୍ତ୍ତନ :

ଏହି ବିଷୟର ପ୍ରତିପାଦନ କରେ ଯେ ସାମାଜିକ-ସୃଷ୍ଟି ବା ବିକାଶ ଏବଂ ଧ୍ୱଂସର ପ୍ରଣାଳୀରେ ଯେଉଁ ସବୁ ପରିବର୍ତ୍ତନ ଘଟୁଛି ସେଗୁଡ଼ିକର ଠିକଣାଟି ଅନୁସଂଧାନ ଲୋଡ଼ା । ବିକାଶ କହି ବା ବିବର୍ତ୍ତନ କହି ସବୁ କିଛି ପରିବର୍ତ୍ତନଶୀଳ । ବାସ୍ତବତା ଚିର ଗତିଶୀଳ । ଏହା ପ୍ରାଣିବଂତ ଓ ବର୍ଦ୍ଧିଷ୍ଣୁ ଇହ ବା cosmos । ଅଗଂଭରେ ବିବର୍ତ୍ତନ କେବଳ ଜୈବ ଜଗତ ପ୍ରତି ପ୍ରଯୋଜ୍ୟ ଥିଲା । ମାତ୍ର କ୍ରମେ ଏ ବିଷୟଟି ସମଗ୍ର ବିଶ୍ୱଜଗତକୁ ଆବୃତ କଲାଣି ।

୪ । Social Causation : ସାମାଜିକ କାରଣ-ନିବଂଧ :

ପ୍ରାକୃତିକ ବା intracosmic କାରଣ-ନିବଂଧ ମଧ୍ୟରେ ସାମାଜିକ କାରଣାବଳୀ ମଧ୍ୟ ଅଂତର୍ଗତ । ସାମାଜିକ ସବୁ ପ୍ରକୃତିକ ସବୁର ଏକ ଅବିଚ୍ଛେଦ୍ୟ ଅଂଶ । ମାର୍କ୍ସ ଏ ବିଷୟ ଉପରେ ସବାଧିକ ଗୁରୁତ୍ୱ ଦେଇଯାଇଛଂତି ।

୫ । Relativism : ଆପେକ୍ଷିକବାଦ :

ଆପେକ୍ଷିକବାଦ ବ୍ୟାପକ ଅର୍ଥରେ ବ୍ୟବହୃତ । ଆଇନଷ୍ଟାଇନ୍‌ଙ୍କ ତତ୍ତ୍ୱକୁ ଆଧାର କରି ଏହା ଗଢ଼ି ଉଠିଛି । ଏହାର ତାତ୍ପର୍ଯ୍ୟ ହେଉଛି, କେବଳ ନ୍ୟାୟଶାସ୍ତ୍ର ଓ ବିଶୁଦ୍ଧ ଗଣିତ ନୁହେଁ, ସମସ୍ତ ଜ୍ଞାନ ହିଁ ଅପେକ୍ଷିକ । ଏହା ଜ୍ଞାତାର ଅପେକ୍ଷାଶୀଳ । ସମସ୍ତ ପ୍ରକାର ମୂଲ୍ୟାୟନ ଓ ଦୃଷ୍ଟିଭଂଗୀ ସଂପୃକ୍ତ ମୂଲ୍ୟାୟକ ଓ ଦ୍ରଷ୍ଟାଙ୍କ ଉପରେ ନିର୍ଭରଶୀଳ । ଏ ସବୁ ବ୍ୟକ୍ତିନିରପେକ୍ଷ ନୁହେଁ ।

୬ । Dimensional Integration : (ଆୟତନିକ ସଂହତି) :

ବାସ୍ତବତା ବଡ଼ ଜଟିଳ । କୌଣସି ଏକମାତ୍ରିକ (mono-dimensional) ବ୍ୟାଖ୍ୟା ଦ୍ୱାରା ଏହାର ସ୍ୱରୂପ ଉଦ୍‌ଘାଟନ ସଂଭବ ନୁହେଁ । କାରଣ ବହୁ-ଆୟତନିକ ବାସ୍ତବତାର ସ୍ୱରୂପ ନିର୍ଣ୍ଣୟ କେବଳ ବହୁ-ଆୟତନିକ ବ୍ୟାଖ୍ୟା ଦ୍ୱାରା ହିଁ ସଂଭବ ।

ଏ ତ ଗଲା ଆଧୁନିକତାର ବିଷୟ-ଧାରା ବା conceptual frame-work । ଆଧୁନିକତାର ମୌଳ ମୂଲ୍ୟବୋଧ କଣ ସେ ସଂବଂଧରେ ମଧ୍ୟ କେତେକ ସୂଚନା ପ୍ରଫେସର ଖ୍ୱାଜା ସାହେବ ଦେଇଛଂତି :

(କ) Life-affirmation or this-worldliness : ଏହାର ଅର୍ଥ ଜୀବନ-ସଚେତନତା ବା ଐହିକ ଚେତନା ବୁଝାଯାଇ ପାରେ ।

(ଙ) Affluence : ପ୍ରାଚୁର୍ଯ୍ୟ :

ଏହା ଟେକ୍‌ନୋଲଜିକାଲ ପ୍ରଗତି ସହିତ ସଂପୃକ୍ତ । କେବଳ ଧନ ଦୌଲତରେ ପ୍ରାଚୁର୍ଯ୍ୟ ନୁହେଁ, ମଣିଷର ସାମାଜିକ ଅର୍ଥନୀତିକ ମୁକ୍ତି ସହିତ ସଂପୃକ୍ତ ଏବଂ ତାର ଭୂମ୍ୟୋବିକାଶର ଭିତ୍ତିଭୂମି ରୂପେ ଏହାର ଗୁରୁତ୍ୱ ଅନସ୍ୱୀକାର୍ଯ୍ୟ । ଚମ୍ପୁତ୍ର ବିଦ୍ୟାର ପ୍ରଗତି ଦୃଷ୍ଟିକୋଣରୁ ବହୁ ପରିବର୍ତ୍ତନ ଆଣେ ।

(ଚ) Humanistic Love and the dignity of the Individual :

ଏହାର ଅର୍ଥ ବ୍ୟକ୍ତି ସତ୍ତାର ସର୍ବୋଚ୍ଚ ସ୍ୱୀକୃତି ଓ ସମ୍ମାନ । ବ୍ୟକ୍ତିର ବ୍ୟକ୍ତିତା ବା human essence କୁ ମର୍ଯ୍ୟାଦା ଦାନ; ତାର ଜନ୍ମ ବା କୌଳିନ୍ୟ କିଂବା ସାମାଜିକ ପ୍ରତିଷ୍ଠାକୁ ନୁହେଁ ।

(ଛ) Spiritual Autonomy : (ଆଧ୍ୟାତ୍ମିକ ସ୍ୱାତଂତ୍ର୍ୟ )

ଏହି ମୂଲ୍ୟବୋଧଟି ଉପରୋକ୍ତ ମୂଲ୍ୟବୋଧର ବିସ୍ତୃତି । ଏହାର ତାତ୍ପର୍ଯ୍ୟ ବୁଝାଇବାକୁ ଯାଇ କୁହାଯାଇଛି, ମଣିଷର ସମସ୍ତ ଅଂଗୀକାର କେବଳ ତାର ଭିତରର ସ୍ୱୟଂ (self) କିଂବା ଭଗବାନଂକ ନିକଟରେ, କୌଣସି ବାହ୍ୟ କର୍ତ୍ତୃତ୍ୱ ନିକଟରେ ନୁହେଁ । ଏଠା ଚଂଡିଦାସଂକର ସେଇ ମହତ୍ ବାଣୀ ସ୍ମରଣ କରାଇ ଦିଏ :

"ଶୁଣରେ ମଣିଷ ଭାଇ,
ସବୁରି ଉପରେ ମଣିଷ ସତ୍ୟ,
ତାହାର ଉପରେ ନାହିଁ ।"

(ଜ) Polymorphous equality : ବହୁମୁଖୀ ସମାନତା :

ଏହା ଏକ ଅପେକ୍ଷାକୃତ ଅର୍ବାଚୀନ ମୂଲ୍ୟବୋଧ । ରାଜନୀତିକ ସମାନତା ତୁଳନାରେ ଏହା ଅଧିକ ଅର୍ଥପୂର୍ଣ୍ଣ ଓ ସୁଦୂରପ୍ରସାରୀ । ଏହା କେବଳ ଭୋଟଦାନର ସ୍ୱାଧୀନତା ନୁହେ କିଂବା ସମସ୍ତଂକୁ ସମାନ ସୁଯୋଗ ଦେବା ନୁହେଁ । ସମସ୍ତ ପ୍ରକାର ଜନ୍ମଗତ ଅଧିକାର ଓ ପୈତୃକ ସୁବିଧା ଓ ମର୍ଯ୍ୟାଦା ଲୋପ ପାଉ ବୋଲି ଏହି ମୂଲ୍ୟବୋଧ ଦାବୀ କରେ, ଯଦିଓ ବର୍ଗୀକରଣ କିଂବା ଶ୍ରେଣୀବିନ୍ୟାସର ଏହା ବିରୋଧୀ ନୁହେଁ ।

(ଝ) Ceaseless Relativity of Values : (ମୂଲ୍ୟବୋଧ ଗୁଡ଼ିକର ପାରସ୍ପରିକ ସଂପର୍କ) :

ମଣିଷର ଗଠନଶୀଳତା ଅଦ୍ଭୁତ ସଂଯୋଗ ଓ ସମନ୍ୱୟ ରକ୍ଷି ମୂଲ୍ୟବୋଧ ମୂଳକ ପରସ୍ପର ଅଦ୍ଭୁତ ଏକ ଅବିଚ୍ଛେଦ୍ୟ ଅବିନାଶୀ ସଂପର୍କରେ ଆବଦ୍ଧ । ମୂଲ୍ୟବୋଧ କ୍ରମପରିବର୍ତ୍ତନଶୀଳ, ସ୍ଥାଣୁ ବା 'ସନାତନ' କିମ୍ବା ଶାଶ୍ୱତ ନୁହେଁ । ମୂଲ୍ୟବୋଧ ସଂବନ୍ଧରେ ମଣିଷର ଅନ୍ତର୍ଦୃଷ୍ଟି ଓ ଅବବୋଧ ମଧ୍ୟ ବଦଳୁଛି । ମାନସିକତାରେ ପରିବର୍ତ୍ତନ ଦେଖା ଯାଉଛି ।

ଏହାହିଁ ହେଲା ମୋଟାମୋଟି ଆଧୁନିକତା ଓ ଆଧୁନିକ ଅବବୋଧର ଏକ ଆକଳନ । ପ୍ରଯୁକ୍ତି ବିଦ୍ୟାର କ୍ରମଅଗ୍ରସରତା, ମଣିଷର ସାମାଜିକ ସଂପର୍କରେ ବହୁ ଆବର୍ତ୍ତନ, ବିବର୍ତ୍ତନ ଓ ପରିବର୍ତ୍ତନର ପ୍ରଭାବ ଏବଂ ତାର ଗୋଟା ମାନସିକତାରେ କ୍ରମପରିବର୍ତ୍ତନ ଶିଳ୍ପ-ସାହିତ୍ୟରେ ରୂପାୟିତ ନ ହେବ କିପରି ? ମଣିଷଠାରୁ କଣ ଶିଳ୍ପସ୍ରଷ୍ଟା ଅଲଗା ? ତେଣୁ ଆଧୁନିକତାକୁ ଏକ ଐତିହାସିକ ପରିଣାମ ରୂପେ ଗ୍ରହଣ କରିନେବାକୁ ହିଁ ହେବ । ମଣିଷ ପରଂପରାକୁ ନେଇ ଠିଆ ରହିବ, ଆଗକୁ ପାଦ ବଢ଼ାଇବ ନାହିଁ—ଏହା ସଂପୂର୍ଣ୍ଣ ଅବାସ୍ତବ ଓ ଅସ୍ୱାଭାବିକ କଥା । ଅବଶ୍ୟ ଏହାର ଅର୍ଥ ନୁହେଁ ଯେ ଆଧୁନିକତା ପରଂପରାଠାରୁ ବଡ଼ । ଆଜିର ଜଣେ ପ୍ରଥମ ବାର୍ଷିକ ଶ୍ରେଣୀ ବିଜ୍ଞାନର ଛାତ୍ର ଯାହା ଜାଣେ, ତାହା ନ୍ୟୁଟନ ଜାଣି ନ ଥିଲେ । ସେ ଆପେକ୍ଷିକ ତତ୍ତ୍ୱ, କ୍ୱାଂଟମ୍ ଫିଜିକସ୍, ମାଇକ୍ରୋ ଫିଜିକସର ବହୁ କଥା ଜାଣେ, ଯାହା ନ୍ୟୁଟନଙ୍କ ସମୟରେ ଅଜଣା ଥିଲା । ଏହାବୋଲି ପ୍ରଥମ ବାର୍ଷିକ ଶ୍ରେଣୀ ଛାତ୍ରଟି ନ୍ୟୁଟନଙ୍କଠାରୁ ବଡ଼ ବୋଲି କହିବା ନିତାନ୍ତ ହାସ୍ୟକର ହେବ ନାହିଁ କି ? *

୨।୧୦।୮୩

□□□

* ୧୯୮୦ ମସିହା ମାର୍ଚ୍ଚ ମାସରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ, ଶାନ୍ତିନିକେତନରେ ଲେଖକଙ୍କ ଦ୍ୱାରା ପ୍ରଦତ୍ତ ନୃପେନ୍ଦ୍ର ଚନ୍ଦ୍ର ବନ୍ଦୋପାଧ୍ୟାୟ ସ୍ମାରକୀ ବକ୍ତୃତାମାଳା (ଇଂରାଜୀ) ଦ୍ରଷ୍ଟବ୍ୟ ।

# ଆଧୁନିକ କବିତାର ଧାରା ଓ ଧାରଣା

[ଅତି ଆଧୁନିକତା ନାମରେ ପୁରାତନ ଯୁଗର ଉଚ୍ଛିଷ୍ଟ, ବୀଭତ୍ସ ବିକୃତିକୁ ଅନେକେ ସାହିତ୍ୟର ଉପଜୀବ୍ୟ କରିବାର ପକ୍ଷପାତୀ ।

ସାହିତ୍ୟରେ ସମାଜର ବିକୃତି ଯେ ପ୍ରତିଫଳିତ ହେବନାଇ, ତା' ମଧ୍ୟ ନୁହେଁ, କାରଣ ବିକୃତି ବି ସତ୍ୟ । କିନ୍ତୁ ତା'ଠାରୁ ଢେର ବେଶି ସତ୍ୟ ସମାଜର ପ୍ରାଣଶକ୍ତିର ସ୍ଫୂର୍ତ୍ତି ।

ତେଣୁ ବିକୃତିକୁ ବିକୃତି ରୂପେ ନ ଦେଖାଇ ଯଦି 'ପ୍ରକୃତି' ରୂପେ ଚିତ୍ରଣ କରାଯାଏ, ତେବେ ତା'ଠାରୁ ବଳି ଅସତ୍ୟ ଆଉ କ'ଣ ହୋଇପାରେ ? ]

କବିତା ସଂପର୍କରେ ତତ୍ତ୍ୱବାଣୀ ଶୁଣାଇବା ଆମର ଅଭିପ୍ରାୟ ନୁହେଁ । କାରଣ କବିତା କେବଳ ତତ୍ତ୍ୱ ବଳରେ ଲେଖି ହୁଏ ନାହିଁ । ସବୁ ତତ୍ତ୍ୱ ଓ ସବୁ ମତବାଦ ଅଚଳ ହୋଇପଡ଼େ, ଯଦି କବିତା ରସୋତ୍ତୀର୍ଣ୍ଣ ହୋଇ ନ ପାରେ ।

ପାଠକର ପ୍ରସ୍ତୁତ ଉଦ୍ଦୀପନାକୁ (stock response) ଭାଙ୍ଗି ଏକ ନୂତନ କାବ୍ୟ-ଚେତନା ସଂଚାର କରିବା ଯେପରି ଏ-ଯୁଗୀୟ କବିର ଦାୟିତ୍ୱ, ନିଜକୁ ଚର୍ଚ୍ଚିତ ଶବ୍ଦ (counter words) ଓ ଅଭ୍ୟସ୍ତ ଅଭିବ୍ୟକ୍ତିର ଶିକାର ହେବାରୁ ରକ୍ଷାକରିବା ମଧ୍ୟ ତାର ସେହିପରି କର୍ତ୍ତବ୍ୟ । ମାତ୍ର କବି ଯଦି ପାଠକ ସହିତ ଦୁର୍ବଳ ଭାବ ଓ ଅନୁଭୂତିର ଆଦାନ ପ୍ରଦାନରେ ବ୍ୟସ୍ତ ରହେ, ତାହାହେଲେ ସେ ପାଠକର ପ୍ରସ୍ତୁତ ଉଦ୍ଦୀପନାକୁ ବଦଳାଇ ପାରିବ କି ?

କବିତା କବି-ବ୍ୟକ୍ତିତ୍ୱର ନିଛକ ବହିର୍ପ୍ରକାଶ ନୁହେଁ । କବିର ବ୍ୟକ୍ତିଗତ ଆବେଗ ଯେତେବେଳେ ଶବ୍ଦରୂପରେ ରୂପାୟିତ ହୋଇ ବାହାରିଆସେ, ସେତେବେଳେ ତାହା ହୁଏ କାବ୍ୟିକ ଆବେଗ । ତେଣିକି ତାହା ଆଉ ବ୍ୟକ୍ତିତ୍ୱର ଛକରେ ବନ୍ଦୀ ହୋଇ ରହେନାହିଁ, ମାନବୀୟ ସ୍ତର ସ୍ପର୍ଶ କରେ । ତେଣୁ କବିତାକୁ କବିର ବ୍ୟକ୍ତିତ୍ୱର ନିଛକ ପ୍ରତିଫଳନ ମନେକରିବା ନିରର୍ଥକ । କବିତାଠାରୁ କବିର ବ୍ୟକ୍ତିତ୍ୱର ପୃଥକୀକରଣ ଅନିବାର୍ଯ୍ୟ । କେବଳ ଯେ ହ୍ୟୁମ୍, ପାଉଣ୍ଡ୍, ଇଲିଅଟ୍ ପ୍ରମୁଖ ନବ୍ୟ-କ୍ଲାସିକ୍‌ପନ୍ଥୀମାନେ ବ୍ୟକ୍ତି-ନିରପେକ୍ଷତାର ଧ୍ୱଜା ଉଠାଇଛନ୍ତି ତା' ନୁହେଁ, ମାର୍କ୍ସ, ଏଂଗେଲ୍‌ସ୍ ମଧ୍ୟ ଅନ୍ୟ ପକ୍ଷରେ କବିତାର ବ୍ୟକ୍ତିନିରପେକ୍ଷତା ସ୍ୱୀକାର କରି ଯାଇଛନ୍ତି ।

ଅନ୍ୟ ଦିଗରେ କଳ୍ପନାଶ୍ରୟୀମାନେ (Romanticist) ଅତିବ୍ୟକ୍ତିକ ଓ ଆତ୍ମନେପଦୀର ଛକରେ ଅଂତର୍ଲୀନ । ସେମାନଙ୍କର ନିର୍ଜନ ବୈଠକଖାନା ହିଁ ସେମାନଙ୍କର ନିଜସ୍ୱ ଜଗତ । ଏହି ଅଶ୍ରୁସ୍ତ ଜଟିଳ ଭିତରେ ରହି ସେମାନେ ନିଜର ଭାବ ଓ କଳ୍ପନାକୁ ଫେଣେଇ ଫେଣେଇ ଏବଂ ଅନେକ ସମୟରେ ବାହାରୁ କିଛି କିତାବୀ ଆବେଗ ଧାର୍ ଆଣି ଯାହା ରଚନା କରନ୍ତି, ତାହା ହୁଏ କୋଠରୀ-କବିତା ଅଧିକାଂଶ କ୍ଷେତ୍ରରେ ଏହି ସମସ୍ତ କବିତା ବାକ୍‌ସ୍ଫୀତିରେ ହିଁ ପର୍ଯ୍ୟବେସିତ ହୁଏ । ପ୍ରାୟ କାରୁକାର୍ଯ୍ୟ ଓ ସୌକର୍ଯ୍ୟ ହରାଇ ଅଦମ୍ୟ ବାବଦୂକତାରେ (verbosity) ପରିଣତ ହୁଏ । ସେହି ବାଗ୍ମିତାକୁ ତଡ଼ିବା ପାଇଁ ଚାଳିଶ ଶତକର ପ୍ରାରଂଭରେ ନୂତନ କବିତା ଡୁଢଙ୍କା ନେଇଥିଲା ଏବଂ ବର୍ଣ୍ଣନା ଛାଡ଼ି ଦ୍ୟୋତନାର ଆଶ୍ରୟ ଗ୍ରହଣ

କହିଥିଲା:—ସେଇ ବାଗ୍ବୈଭବ ଆଜି ନାନା ଭାବରେ ପଶ୍ଚାଦ୍ଦ୍ୱାର ଦେଇ ଓଡ଼ିଆ କବିତାରେ ଗାଦି ମାଡ଼ି ବସିଛି । କେବେ କେବେ କବିତା ଗ୍ରାମ୍ୟତାର ଶିକାର ହେବାର ବି ଦେଖାଯାଉଛି ।

ଏହା ସାଂଗକୁ ରହିଛି ପୁଣି କାବ୍ୟିକ ଅନିବାର୍ଯ୍ୟତାର ଅଭାବ ଏବଂ ଭାବ ଓ ଚିଂତା ମଧ୍ୟରେ ପ୍ରବଳ ଅସମନ୍ୱୟ । ଆବେଗ ପଛରେ କୌଣସି ବସ୍ତୁଗତ ସମତୁଲ୍ୟ ରହୁ ନ ଥିବାରୁ କବିର ବ୍ୟକ୍ତିଗତ ଆବେଗ ଅନେକ ସମୟରେ କାବ୍ୟିକ ଆବେଗରେ ପରିଣତ ହୋଇ ନ ପାରି ନାଟକୀୟତାରେ ପର୍ଯ୍ୟବସିତ ହେଉଛି ।

କବିତା ଯେ ଏକ ସମୁଚ୍ଚ ଉଚ୍ଚାରଣ (hightened speech)— ଏ ଧାରଣା ପ୍ରାୟ ସାଂପ୍ରତିକ କବିତା କ୍ଷେତ୍ରରୁ ଲୋପ ପାଇଲାଣି । ଆଧୁନିକ କବିତା ଚେତନାର ସର୍ବୋଚ୍ଚ ସମୀକରଣ ଓ ସମନ୍ୱୟ ହେବା ପରିବର୍ତ୍ତେ ପ୍ରାୟ ସାଧାରଣ ସ୍ତରରେ ଯାଇ ପହଂଚି ଯାଉଛି । କବିତାରେ ଏହି ସହଜ-ମାର୍ଗକୁ ଯଦି ବେଶୀ ଦିନ ଚାଲିବାକୁ ଦିଆଯାଏ, ତେବେ ଓଡ଼ିଆ କବିତା ତାର ସମସ୍ତ ମହତ୍ତ୍ୱ ହରାଇ ଏକ-ପ୍ରକାର ଦେବାଳିଆ ହୋଇପଡ଼ିବ ।

ପ୍ରଶ୍ନ ଉଠେ : ଶିଳ୍ପରେ ବ୍ୟକ୍ତିତ୍ୱର ସ୍ଥାନ କେତେ ଦୂର ? ଶିଳ୍ପରେ ବ୍ୟକ୍ତିତ୍ୱର ଗୁପ୍ତ ପଡ଼ିଲେ କ'ଣ ତାହା ପଂଗୁ ହୋଇ ଯାଏ ?

ଏହାର ଉତ୍ତର : ଶିଳ୍ପରେ ଯାହା ବ୍ୟକ୍ତିତ୍ୱର ଗୁପ୍ତ ବୋଲି ଧରି ପଡ଼େ, ସେଇଟା ହିଁ ପଂଗୁତା । †

ବ୍ୟକ୍ତିଗତ ଜୀବନର ଗଭୀର ବେଦନା ଯେତେବେଳେ ନିଭୃତ ମନର ଭିତରେ ଜାରିତ ହୋଇ ବାହାରିଆସେ, ସେତେବେଳେ ତାହା ଆଉ କବିର ହୋଇ ରହେ ନାହିଁ—ସାମୂହିକ ହୋଇଯାଏ । ତାହା ଏକ ଆନଂଦମୟ ରୂପ ଗ୍ରହଣ କରେ । ସାହିତ୍ୟରେ ଯାହା ଖଟକା ସୃଷ୍ଟି କରେ, ତାହା ବ୍ୟକ୍ତିତ୍ୱ ନୁହେଁ, ବ୍ୟକ୍ତିତ୍ୱର ବ୍ୟାହତି—ଚରିତ୍ରପରେ ଯା'ର ଜ୍ୟୋତିଃସ୍ନାନ ହୋଇ ନାହିଁ ।

ଶିଳ୍ପ ବ୍ୟକ୍ତିର ରଚନା—ଏଥିରେ ସଂଦେହ ନାହିଁ । ପୁଣି ଏହା ବ୍ୟକ୍ତିର ରଚନା ନୁହେଁ । ଏଇ ସ୍ୱବିରୋଧିତାର ଅର୍ଥ—ବ୍ୟକ୍ତିତ୍ୱ ହେଉଛି ସାମାଜିକ ବ୍ୟାପାର । ସାମାଜିକ ପରିବେଶ ମଧ୍ୟରେ ହିଁ ବ୍ୟକ୍ତିତ୍ୱ ଜନ୍ମ ନିଏ, ବିକାଶ ପାଏ, ତାର ଗୁଣ ପରିସ୍ଫୁଟ ହୁଏ । ବ୍ୟକ୍ତିତ୍ୱର ଧାରଣା, ବ୍ୟକ୍ତିତ୍ୱର ଉପଲବ୍ଧି, ବ୍ୟକ୍ତିତ୍ୱର ଗୁଣ—ସବୁ କିଛୁ ସମାଜ-ସାପେକ୍ଷ । ଶିଳ୍ପ ଭିତରେ ମଣିଷ ମଣିଷକୁ ନିବିଡ଼ ଭାବରେ ସ୍ପର୍ଶ

† ଶିଳ୍ପ-ଦର୍ଶନର ଭୂମିକା (ଶୁଭେଂଦୁ ଘୋଷ) ଦ୍ରଷ୍ଟବ୍ୟ ।

କରିପାରେ, କାରଣ ଶିଳ୍ପୀ ସେତେବେଳେ ବ୍ୟକ୍ତିମାତ୍ର ନୁହନ୍ତି, ସେ ମଣିଷ । ଶିଳ୍ପ ମଣିଷର ଏକାଂତ —ଅର୍ଥାତ୍ ପ୍ରାକୃତିକ ସହଜ ପ୍ରବୃତ୍ତିକୁ ଖର୍ବ କରି ନୁହେଁ, ଦମିତ କରି ନୁହେଁ; ସେଗୁଡ଼ିକୁ ଜାଗ୍ରତ କରିବା ମଧ୍ୟରେ ହିଁ ପ୍ରକୃତ ସଂସ୍କୃତି । ମଣିଷର ପୂର୍ଣତାର ସ୍ୱପ୍ନ, ତାର ମୁକ୍ତିର ସ୍ୱପ୍ନ,—ଏ ସବୁର ମୂଳରେ ରହିଚି ତାର ସମଗ୍ର ସତ୍ତାକୁ ଉପଲବ୍ଧି କରିବାର କାମନା । କବି ଏକ ସାମାଜିକ ଓ ପ୍ରାକୃତିକ ଏକକ । ମଣିଷର ସାମାଜିକ ଓ ପ୍ରାକୃତିକ ଉପଲବ୍ଧିର ପ୍ରକାଶକ ହିସାବରେ ଶିଳ୍ପ ମଣିଷକୁ ତାର ବର୍ତ୍ତମାନର ସତ୍ତାପ୍ରସାରରେ ଖାଲି ସହାୟତା କରେ ନାହିଁ, ତାର ଅଂତିମ ପରିଣାମ ଆଡ଼କୁ ଅଗ୍ରସରତାର ଶକ୍ତିକୁ ମଧ୍ୟ ବଢ଼ାଇଦିଏ । ଶିଳ୍ପ ମଣିଷର ଆତ୍ମପରିଚୟକ— ତାର ଆତ୍ମମୁକ୍ତି ସାଧନାର ଏକ ଅଖଂଡନୀୟ ଅସ୍ତ୍ର । *

ଜୀବନର ପ୍ରାୟ ସଂପୂର୍ଣ ଅଭିଜ୍ଞତା ଥାଏ ମଗ୍ନ-ଚୈତନ୍ୟରେ । ମଣିଷର ସାମାଜିକ ଓ ପ୍ରାକୃତିକ ଉପଲବ୍ଧିର ପ୍ରାୟ ସମସ୍ତ ଅଂଶ ଥାଏ ଅବଚେତନରେ । ମଣିଷର ସାମଗ୍ରିକ ଅଭିଜ୍ଞତା, ତାର ସମସ୍ତ ଅତୀତର ସଂକେତ ହିଁ ସ୍ମୃତି ରୂପେ ଏଇ ମଗ୍ନ-ଚୈତନ୍ୟରେ ଲୁକାୟିତ ଥାଏ । ଏହାକୁହିଁ କୁହାଯାଏ ଅପରିବର୍ତ୍ତନୀୟ ଗଣ-ମାନସ । ପରିବର୍ତ୍ତନଶୀଳ ବ୍ୟକ୍ତିମାନସ ସହିତ ଅପରିବର୍ତ୍ତନୀୟ ଗଣମାନସର ସଂଯୋଗ ନ ଘଟିବା ଯାଏ, ଶିଳ୍ପ ସଂପୂର୍ଣାଂଶ ରୂପ ପାଇ ନ ପାରେ । ସେଥିପାଇଁ ମଗ୍ନଚୈତନ୍ୟର ଜିନିଷ ଯେତେବେଳେ ଜାଗ୍ରତ ଚୈତନ୍ୟକୁ ଆସି ପରିଚିତ ରୂପରେ ଆତ୍ମପ୍ରକାଶ କରେ, ଆମେ ତାକୁ ଚହ୍ନିପାରୁଁ—କେବଳ ଖାଲି ବୁଦ୍ଧି ଦେଇ ନୁହେଁ, ସମଗ୍ର ସତ୍ତା ଦେଇ ଚହ୍ନିପାରୁଁ । ସେଥିପାଇଁ ପ୍ରକୃଷ୍ଟ ଶିଳ୍ପର ଆବେଦନ ପ୍ରଧାନତଃ ସତ୍ତା ନିକଟରେ ।

ବିଜ୍ଞାନ ଓ ଶିଳ୍ପର ପ୍ରେରଣା ଆସେ ସାମାଜିକ ଉପଲବ୍ଧିରୁ । ସମାଜ ସହିତ ବ୍ୟକ୍ତିର ସଂପର୍କରୁ । ମଣିଷ ତାର ସମଗ୍ର ସତ୍ତାର ଉପଲବ୍ଧିକୁ ବହିର୍ବାସ୍ତବ ମାଧ୍ୟମରେ ସ୍ୱତଃ ଉଦ୍ଭାସିତ କରିପାରିଲେ ହୁଏ ଶିଳ୍ପ, ବିଶ୍ଳେଷଣ କରିପାରିଲେ ହୁଏ ବିଜ୍ଞାନ ।

ମାତ୍ର ରୋମାଂଟିସିଷ୍ଟମାନେ ଚୈତନ୍ୟକୁ ଏକ ସ୍ୱୟଂଭୂ ଓ ବାସ୍ତବନିରପେକ୍ଷ ଜିନିଷ ରୂପେହିଁ କଳ୍ପନା କରିଥାଂତି । କେବଳ ସେତିକି ନୁହେଁ, ଯେଉଁ ସ୍ଥିତିବାଦୀ ଦର୍ଶନ ଦ୍ୱାରା ସେମାନେ ପ୍ରଭାବିତ, ସେଇ ଦର୍ଶନର ମୂଳ ସୂତ୍ରଟି 'existence preceds essence' (ସାର୍ତ୍ରେ) ମଧ୍ୟ ସେମାନେ ଭୁଲିଯାଂତି । ସାର୍ତ୍ରେ ବିଚ୍ଛିନ୍ନ ଓ ଏକକ ସତ୍ତାର ସମାଜରେ ଅନ୍ୟ ସତ୍ତା ସଂଗରେ ସହାବସ୍ଥାନ ଉଦ୍ଦେଶ୍ୟରେ

---

* Ibid

praxis ବା କର୍ମତତ୍ପରତାରେ ବିଶ୍ୱାସ କରନ୍ତି । କାମ୍ୟୁ ସତ୍ତାର ସଂକଟ ଦୂର କରିବା ପାଇଁ ସଂଘର୍ଷ ବା ବିପ୍ଳବର ଅନିବାର୍ଯ୍ୟତା ସ୍ୱୀକାର କରନ୍ତି । ମାତ୍ର ଆମ ଦେଶର ଏଇ ଫିକଟେଟପଂଥୀ ଦାର୍ଶନିକମାନେ ନିଜ ଦର୍ପଣରେ ନିଜର ପ୍ରତିବିଂବ ଦେଖିକି 'ମୁଁ ଅଛି' ବୋଲି ଘୋଷଣା କରିଥାଂନ୍ତି, ସମାଜ ସହିତ ନିଜ ସଂପର୍କ ଅନୁଧ୍ୟାନ କରି ନୁହେଁ ।

ଆଉ ଦଳେ ଉଗ୍ରପଂଥୀ ଅଛଂନ୍ତି, ଯେଉଁମାନେ ଚିଂତା-କୋଣରୁ ରୋମାଂଟିସିଜମ୍‌ର ଘୂର୍ଣ୍ଣୀଭୁକ୍ତ ହେଲେ ମଧ୍ୟ ବିକଳ୍ପ ଧ୍ୱନି ରୂପେ 'ବିପ୍ଳବ' ଶବ୍ଦଟାକୁ ବାରଂବାର ଉଚ୍ଚାରଣ କରିଥାଂନ୍ତି । ରାଜନୀତିକ ପ୍ରଗତି ହାସଲ ପାଇଁ ସ୍ପୃହା ବା ବିପ୍ଳବର ଚେତନା ଯେତେବେଳେ ମଣିଷର ଚେତନାକୁ ଚିପି ଚାପିକୁ ରସାପ୍ଳୁତ କରେ ଏବଂ ମତାମତର ସଂକୀର୍ଣ୍ଣତା ଛାଡ଼ି ମାନବୀୟ ଅନୁଭୂତିର ବିଶାଳତାରେ ଜନ୍ମ ନିଏ, ଅର୍ଥାତ୍ ଜୀବନ୍ତ ମାନବୀୟ ସତ୍ୟ ହୋଇ ଉଠେ, ସେତେବେଳେ ସାହିତ୍ୟରେ ତାର ଆତ୍ମପ୍ରକାଶ ସାର୍ଥକ ହୁଏ, ଅନ୍ୟଥା ନୁହେଁ ।

ଏଂଗେଲସ୍ ସାହିତ୍ୟରେ ଖୋଲଖୋଲି ମତପ୍ରକାଶ ସଂବଂଧରେ ସାବଧାନ କରିଦେଇ ଯାଇଛଂନ୍ତି—"The more the opinion of the writer remains hidden, the better for the work of art." ମାର୍କ୍ସ୍ ମଧ୍ୟ ତରୁଣ ହେଗେଲ୍‌ପଂଥୀଂକ ଗେଟେ-ବିରୋଧୀ ଆଂଦୋଳନକୁ ଭର୍ତ୍ସନା କରି କହିଥିଲେ —"It is possible to distinguish between Goethe the philistine and Goethe the poetic genius." ଏଂଗେଲ୍‌ସ୍ ଅନ୍ୟଥା ପ୍ରତିକ୍ରିୟାଶୀଳ ଓ ରାଜତଂତ୍ରବାଦୀ ବାଲ୍‌ଜାକ୍‌ଂକୁ ତାଂକ କାଳର ଶ୍ରେଷ୍ଠ କଳାକାର ରୂପେ ଚିହ୍ନାଟ କରି ଯାଇଛଂନ୍ତି । ଏଥିରୁ ଏହା ସ୍ପଷ୍ଟ ଯେ ସଚ୍ଚୋଟ ଶିଳ୍ପୀ ତା' ନିଜର ଶ୍ରେଣୀ-ପକ୍ଷପାତ ବିରୋଧରେ ଯାଇ ମଧ୍ୟ ଇତିହାସ ପ୍ରତି ପକ୍ଷପାତ ପ୍ରଦର୍ଶନ କରିପାରେ ଅର୍ଥାତ୍ ଇତିହାସର ଅଭି-ମୁଖ୍ୟର ଠିକ ଚିହ୍ନାୟନ କରିବାକୁ ବାଧ୍ୟ ହୁଏ । ନତୁବା ସେ ନିଜ ଶିଳ୍ପ ପ୍ରତି ଅନ୍ୟାୟ କରି ବସେ । କାରଣ ଆର୍ଟର ବୈଶିଷ୍ଟ୍ୟ ହେଲା ଏଇଆ ଯେ ଏହା ଚରିତ୍ର ମାଧ୍ୟମରେ ବିଶେଷ ସହିତ ସାମାନ୍ୟର ଏଭଳି ସମନ୍ୱୟ ସାଧନ କରେ, ଯାହା ଫଳରେ ଦେଶ-କାଳ ଦ୍ୱାରା ଚିହ୍ନିତ ଯେଉଁ ସମାଜରେ ଆମେ ବାସ କରୁଁ, ସେଇ ସମାଜର ମଣିଷ ଜୀବନର ଏକ ସାମଗ୍ରିକ ରୂପ ଓ ଐତିହାସିକ ତାତ୍ପର୍ଯ୍ୟ ଆମ ମନ ଭିତରେ ସଂକ୍ରମିତ ହୁଏ । ଏଇ ସଂଚରଣ ପ୍ରକ୍ରିୟାଟି ରସସୃଷ୍ଟି ମାଧ୍ୟମରେ ହିଁ ହୁଏ । ତେଣୁ ଏଥିରେ ସମାଜ-ବିକାଶରେ ଆର୍ଟର ପ୍ରତ୍ୟକ୍ଷ ଭୂମିକା ସିଧାସଳଖ ପ୍ରତିଫଳିତ

ହୁଏ ନାହିଁ କି ହେବା ଉଚିତ ମଧ୍ୟ ନୁହେଁ । ତଥାପି ଆର୍ଟ୍‌ର ଯେ ଗୋଟାଏ ଭୂମିକା ଅଛି ଏବଂ ତାହା ଯେ ଚିରନ୍ତନ, ଏହା ମାନିନେବାକୁ ହିଁ ହୁଏ ।

ଆମ ଦେଶର ପଲ୍ଲବଗ୍ରାହୀ ବିପ୍ଳବବାଦୀମାନେ ଧ୍ୱଂସ କଟକର ନର୍ଦ୍ଦମା ପର୍ଯ୍ୟନ୍ତ ଯାଇଥିଲେ ମଧ୍ୟ ପ୍ରକାଶ୍ୟ ସଭାସମିତିରେ ଆଧୁନିକ ଓଡ଼ିଆ କବିମାନଙ୍କୁ ଯା' ତା' ଗାଳିଦେବା ର ଲେଖକ ନିଜେ ଶୁଣି ବ୍ୟଥିତ ହୋଇଛି । ଅଳ୍ପ ଦିନ ତଳେ ଏକ କଲେଜ ଅନୁଷ୍ଠାନରେ ପ୍ରୌଢ଼ୋତ୍ତର ଜଣେ ବିପ୍ଳବୀ କବି ଇଲିଅଟ୍ ଓ ପାଉଣ୍ଡଙ୍କୁ ଥରେ ନୁହେଁ, ଦୁଇ ତିନିଥର 'ବାଷ୍ଟାର୍ଡ଼' କହିଥିବାର ଶୁଣି ଲେଖକ ତାଜବ ହୋଇଥିଲି । ସର୍ବହରା ସଂସ୍କୃତି ପୃଥିବୀର ଶ୍ରେଷ୍ଠ ସଂସ୍କୃତିର ପରିପୋଷକ, କାରଣ ତାହା ଶ୍ରେଣୀ-ବୈଷମ୍ୟରୁ ମୁକ୍ତ ଏବଂ ସମାଜର ସର୍ବାଧିକ ଶ୍ରେଣୀ ଏବଂ ଉତ୍ପାଦକ ବା ସୃଜନଶୀଳ ଶ୍ରେଣୀକୁ ଉତ୍ସର୍ଗୀକୃତ । ମାତ୍ର ଏହା ହିଁ ଯଦି ସେ ସଂସ୍କୃତିର ଅଗ୍ରିମ ନମୁନା ହୁଏ, ତେବେ ଏହାଠାରୁ ବଳି ବିଡ଼ମ୍ବନାର ବିଷୟ ଆଉ କ'ଣ ହୋଇପାରେ ? ଏଇ 'ବିପ୍ଳବୀ'ମାନଙ୍କୁ ଲେଖକ ନିଜେ କିଛି ନ କହି ବିଶ୍ୱ କମ୍ୟୁନିଷ୍ଟ ଆନ୍ଦୋଳନର ଜଣେ ମୁଖପାତ୍ର ଏବଂ ଏ ଶତାବ୍ଦୀର ଜଣେ ଶ୍ରେଷ୍ଠ ଫରାସୀ କବି ଆରାଗଁଙ୍କର କେତେକ ଶବ୍ଦ ଉପହାର ଦେବା ଦରକାର ମନେ କରୁଛି । ଆରାଗଁ ଏଇ ଶ୍ରେଣୀସ୍ଥ ଲୋକଙ୍କୁ ଲକ୍ଷ୍ୟ କରି କହିଛନ୍ତି—

“କାବ୍ୟର ଇତିହାସ ତାର ଟେକ୍‌ନିକ୍ ବା ଆଙ୍ଗିକରହିଁ ଇତିହାସ । ଯେଉଁମାନେ ଆମକୁ ନୀରବ କରି ଦେବାକୁ ଚାହାନ୍ତି, ସେମାନେ ସେଇ ଶ୍ରେଣୀସ୍ଥ ନିକୃଷ୍ଟ ଲେଖକ—ଯେଉଁମାନେ କିଛି ହିଁ ନିର୍ମାଣ କରିନାହାନ୍ତି, ଯେଉଁମାନେ ଖାଲି ଗୋଟା କେତେ ଚୁଟକି ଟାଣି ଏକ-ଦୁଇ-ତିନ୍ କହି ହିଁ କ୍ଷାନ୍ତ ହୁଅନ୍ତି । ମୁଁ ତ ଆଜି ପର୍ଯ୍ୟନ୍ତ କବିତାର ପ୍ରତ୍ୟେକଟି ଅଂଗ ବିଷୟରେ ସଚେତନ ନ ହୋଇ କୌଣସି କବିତା ଲେଖି ନାହିଁ ।

“ଆଜି ଯେତେବେଳେ ଦେଖେଁ ଯେ କେହି କେହି ଅଯଥା ରାଜନୈତିକ ଆବାଜରେ ଗତ ଅଭିଜ୍ଞତାର କୌଣସି ନା କୌଣସି ଜିନିଷକୁ ବାତିଲ କରିବାକୁ ଚାହୁଁଛନ୍ତି ଏବଂ କହୁଛନ୍ତି ଯେ ଆମର ଜାତୀୟ ପ୍ରତିଭା କେବଳ ଧରାବନ୍ଧା ପଦ୍ୟର ସଡ଼କ ଉପର ଦେଇହିଁ ଚାଲିବ, ମୁଁ ହସି ପକାଏ ଏବଂ ପେଡେଲ୍ ଦେଇ ପିଆନୋ ବଜାଉଥିବା ସେଇ ମୂର୍ଖମାନଙ୍କୁ କହିବାକୁ ଇଚ୍ଛା ହୁଏ : ପିଲାଏ, ହାତ ଧୁଅନା ! ସମସ୍ତେ ଯଦି ଯେଉଁ କର୍ମକ୍ଷେତ୍ରରେ ଯିଏ ଅଭିଜ୍ଞ ଓ ବିଶେଷଜ୍ଞ ସେଇ କର୍ମକ୍ଷେତ୍ରରେ ଅଭିନିବିଷ୍ଟ ହୁଅନ୍ତି, ତେବେଯାଇ ଦୁନିଆ ଜାଗାଟାର କିଛି ଉନ୍ନତି ହେବ ଏବଂ ଯେଉଁ ମୂର୍ଖମାନେ ଦାଆ-ହାତୁଡ଼ିର ମାହାତ୍ମ୍ୟ (କିମ୍ବା କାଗଜ ବୋମା ପିସ୍ତଲ୍‌ର ମହିମା) କୀର୍ତ୍ତନ କରି ହାତତାଳି ସାଉଁଟିବାରେ ଲାଗିଛନ୍ତି, ସେମାନଙ୍କ ସଂଖ୍ୟା ବି କମିବ ।”

## ତୃତୀୟ ମୁହଁ :

ଓଡ଼ିଆ ସାହିତ୍ୟରେ ଆଉ ଏକ ମୁହଁ ଦେଖାଯାଏ—ଯାହା ଅସ୍ତିତ୍ୱବାଦୀ, ପରାଜିତ, ତଟସ୍ଥ ମଣିଷର ମୁହଁ ।

ବାସ୍ତବତାର କଷ୍ଟି ଉପରେ କର୍ମ ସହିତ ଚିନ୍ତାର ବ୍ୟବଧାନ ଯେପରି କ୍ରମଶଃ ବଢ଼ି ଚାଲିଛି, ସେଥିରେ ପ୍ରଚଳିତ ମୂଲ୍ୟବୋଧ ଚେତନାର ସେ ସଂକଟକୁ ଦୂର କରିପାରୁନାହିଁ, ବରଂ ପ୍ରତି ମୁହୂର୍ତ୍ତରେ ତାକୁ ଅଧିକ ପ୍ରସାରିତ କରୁଛି । କେତେକ ମଣିଷ ବାସ୍ତବତାଠାରୁ ପଳାଇ ଯାଇ ସ୍ୱୀକୃତ କଳ୍ପନା ବାହାରେ ଏକ ନିଜସ୍ୱ ଜଗତ ସୃଷ୍ଟି କରିବାକୁ ଚେଷ୍ଟା କରୁଛନ୍ତି, ଆଉ କେତେକ ମୁକାବିଲାର ଶିବିରରେ ଦ୍ରୁତ ସାମିଲ ହୋଇ ବାସ୍ତବତାର ପରିବର୍ତ୍ତନ କରିବାକୁ ଅଙ୍ଗୀକାର କରିଛନ୍ତି । ଯେଉଁ-ମାନେ ବାସ୍ତବତାକୁ ଛାଡ଼ି ପଳାଇଯାଇ ପୈତୃକ ପ୍ରାଣଟା ରକ୍ଷା କରିବାକୁ ବ୍ୟାକୁଳ, ବାସ୍ତବତା କିନ୍ତୁ ସେମାନଙ୍କ ପିଚ୍ଛା ଛାଡ଼ିବାକୁ ନାରାଜ । ଫଳରେ ଚିନ୍ତା ଓ ଚେତନାର ସଂକଟରୁ ରକ୍ଷା ପାଇବାର ମାର୍ଗ କଦାପି ନେତିମୂଳକ ପନ୍ଥାରେ ସମ୍ଭବ ବୋଲି ମନେହୁଏନାହିଁ । ବରଂ ସମାଜ ଓ ପ୍ରକୃତି ସହିତ ମଣିଷର ଯେଉଁ ଚିରନ୍ତନ ଲଢ଼େଇ ତାକୁ ମଣିଷ କରିଛି, ପଶୁ-ସତ୍ତାର ଉପରକୁ ଉଠାଇଛି, ସେଇ ପଥରେହିଁ ମଣିଷ ନିଜର ଓ ସମାଜର ରୂପାନ୍ତର ସାଧନ କରିପାରିବ ।

ଅତି-ଆଧୁନିକତା ନାମରେ ପୁରାତନ ଯୁଗର ଉଚ୍ଛିଷ୍ଟ, ଖାଉଟି ବିକୃତିକୁ ଅନେକେ ସାହିତ୍ୟର ଉପଜୀବ୍ୟ କରିବାର ପକ୍ଷପାତୀ । ବହୁ ଆଧୁନିକ ରଚନା ଯୌନ-ବିକୃତିରେ ପୂର୍ଣ୍ଣ । ଅବଶ୍ୟ ଏ କଥା ସ୍ୱୀକାର୍ଯ୍ୟ ଯେ ପ୍ରେମ ଓ ଯୌନତା ମଣିଷର ଶକ୍ତିଶାଳୀ ପ୍ରବୃତ୍ତି ମଧ୍ୟରେ ଅନ୍ୟତମ । ତାର ସ୍ଥାନ କେବଳ କ୍ଷୁଧାର ତଳେ । ମଣିଷର ବହୁ ସୃଜନଶୀଳତା ଓ ମହନୀୟ କୀର୍ତ୍ତି ପଛରେ ପ୍ରେମ ଓ ଯୌନତାର ଅବଦାନ ପ୍ରଚ୍ଛନ୍ନ ଓ ଅଂଶଶୀଳ । ମଣିଷ ଏଇ ଶକ୍ତିଶାଳୀ ପ୍ରବୃତ୍ତିକୁ ଦମିତ କରି ନୁହେଁ, ବରଂ ସୁସ୍ଥ ଓ ମୁକ୍ତ ସଂପର୍କ ମଧ୍ୟରେ କଳୁଷମୁକ୍ତ କରି ନିଜର ସୃଜନଶୀଳତା ସପକ୍ଷରେ ପ୍ରେରଣାର ଉତ୍ସ ରୂପେ ବ୍ୟବହାର କରି ପାରିବ । ସାହିତ୍ୟରେ ସମାଜର ବିକୃତି ଯେ ପ୍ରତିଫଳିତ ହେବ ନାହିଁ, ତା' ମଧ୍ୟ ନୁହେଁ, କାରଣ ବିକୃତି ବି ସତ୍ୟ । କିନ୍ତୁ ତା'ଠାରୁ ଢେର ବେଶୀ ସତ୍ୟ ସମାଜର ପ୍ରାଣଶକ୍ତିର ସ୍ଫୁର୍ତ୍ତି । ଜୀବନର ନିକଷରେ ସତ୍ୟାସତ୍ୟର ଅନ୍ତିମ ପରୀକ୍ଷା ହୋଇପାରେ । କିନ୍ତୁ ବିକୃତିକୁ ବିକୃତି ରୂପେ ନ ଦେଖାଇ ଯଦି 'ପ୍ରକୃତି' ରୂପେ ଚିତ୍ରଣ କରାଯାଏ, ତେବେ ତା'ଠାରୁ ବଳି ଅସତ୍ୟ ଆଉ କଣ ହୋଇପାରେ ?

ଆଧୁନିକ ଓଡ଼ିଆ କବିତାକୁ ଏଭଳି ବଞ୍ଚନା ଓ ସ୍ୱବିରୋଧର ମୁକାବିଲା କରିବାକୁ ହିଁ ପଡ଼ିବ । ସଂଘର୍ଷ ହିଁ ଜୀବନର ପଥ । ଦ୍ୱନ୍ଦ୍ୱ ଭିତର ଦେଇ ଜୀବନ ପ୍ରତି ମୁହୂର୍ତ୍ତରେ ପୂର୍ଣ୍ଣତା ଆଡ଼କୁ ଅଗ୍ରେଇଚାଲିଛି । ସାହିତ୍ୟରେ ସେଇ ଗତି ଓ ରୂପାନ୍ତରର ପ୍ରତିଫଳନ ଅବଶ୍ୟମ୍ଭାବୀ । ତେଣୁ ଅଜସ୍ର ବିପର୍ଯ୍ୟୟ ଓ କେନ୍ଦ୍ରଚ୍ୟୁତି ଭିତରେ ସାର୍ଥକତାର ମାର୍ଗ ଅନ୍ୱେଷଣ—ଆଧୁନିକ କାବ୍ୟ-ପୁରୁଷର ଏକମାତ୍ର ଅଙ୍ଗୀକାର ହେବା ଉଚିତ ।

□ □ □

---

ଝଙ୍କାର : ଏପ୍ରିଲ୍/୧୯୬୨ ସଂପାଦକୀୟ

# ବିଂଶ ଶତକର କଥା-ସାହିତ୍ୟ

[ ବିଂଶ ଶତକର କେବଳ୍ ମାତ୍ର ଓଡ଼ିଆ କଥାସାହିତ୍ୟର ଆଲୋଚନା ଆରଂଭ କଲେ ଆମକୁ ଯେଉଁଠିକି ଯିବାକୁ ହେବ, ତାହା ବାସ୍ତବରେ ୟୁରୋପୀୟ ଅଷ୍ଟାଦଶ ଶତକର ସମତୁଲ୍ୟ ଏକ ଅବସ୍ଥା । ଏକ କୃଷିଭିତ୍ତିକ ସାମଂତତଂତ୍ରୀ ସମାଜରେ ଔପନିବେଶିକ ଶାସନର ଚଉକାଠ ଭିତରେ ଏହାଠୁ ଆଉ ବେଶୀ କିଛି ଆଶା କରାଯାଇ ପାରି ନଥାଂତା ।

ତେଣୁ ଆମ ସାହିତ୍ୟରେ ବିଂଶ ଶତାବ୍ଦୀର ଆବିର୍ଭାବ କେବେ, ତାହା ଚିହ୍ନୋଟ କରିବା ଏକ ଅସଂଭବ ବ୍ୟାପାର ।]

ଆଧୁନିକ ଗଳ୍ପ ଟ୍ରାପ୍ସ ଟେନସନ । ଏହା ମଧ୍ୟ ଘଟନା କିଂବା ଚରିତ୍ର ନୁହେଁ । ଏହା ସମୟ ବି ନୁହେଁ । ଏହା ହୁଏତ ଏକ ମୁହୂର୍ତ୍ତ—ଯାହା ଟ୍ରାଂଜେକ୍ଟ, ଘଡ଼ିର ଟିକ୍-ଟିକ୍ ଶବ୍ଦ ପରେ, ଟିକ୍ ଓ ଟକ୍ ମଧ୍ୟରେ ରହୁଛି ଏକ ବ୍ୟବଧାନର ମାୟା । *

ଗଳ୍ପ ବା ଫିକ୍‌ସନ ସମୟ ଓ ସମୟହୀନତା ଉଭୟଙ୍କୁ ଆଶ୍ରୟ କରେ । ସମୟର ମାନବୀକରଣ (ହ୍ୟୁମାନାଇଜେସନ) ମାନେ ପ୍ଲଟ ଓ କଥାବସ୍ତୁର ସଂଗଠନ । ପ୍ଲଟର ଅଭାବ ସମୟହୀନତାର ପ୍ରତୀକ । ଟିକ୍ ଓ ଟକ୍‌ର ସମ୍ବନ୍ଧ ହେଉଛି ସମୟର ସୂଚକ ଏବଂ ଟକ୍ ଓ ଟିକ୍ ମଧ୍ୟରେ ଥିବା ବ୍ୟବଧାନ ହେଉଛି ସାମୟିକ ସମୟ-ହୀନତାର ସୂଚକ । ନିର୍ବିଶେଷ ସମୟହୀନ ହେଉଛି ପ୍ଲଟର ଅଭାବ, ଅନ୍ୟ କଥାରେ କଥାବସ୍ତୁର ନୈର୍ମନଷ୍ୟୀକରଣ ।

ମିଥ୍ ବା ଉପକଥା ସହିତ ଗଳ୍ପର (fiction) ପାର୍ଥକ୍ୟ ସ୍ୱୀକାର୍ଯ୍ୟ । ମିଥ ସ୍ଥିରତାର ଦୂତ, ଫିକସନ ପରିବର୍ତ୍ତନର ।

'Myths call for absolute, fictions for conditional assent. Myths make sense in terms of a lost order of time *illud tempus*; fictions if successful, make sense here and now. *hoc tempus*' (Eliade)

---

* The tick-tock gap is analogous to the role of the 'ground' in spatial perception; each is characterized by the lack of form against which the illusony organizations of shape and rhythm are perceived in the spatial or temporal object;—Paul Fraisse.

'The clock's tick-tock I take to be a model of what we call a plot, and organization that humanizes time by giving it form, and the interval between tock and tick represents purely successive, disorganized time of the sort that we need to humanize.

—Frank Kermode ('The Sense of an Ending—the Theory of Fictim')

ମିଥ୍‌କୁ ବ୍ୟକ୍ତିମାନସର ଗଣମାନସ ମାଧ୍ୟମରେ ସ୍ୱତନ୍ତ୍ରଭାବରେ ରୂପାନ୍ତର କୁହାଯାଇପାରେ । ମିଥ୍ ତେଣୁ ଚେତନାର ଭଳି ଅପରିବର୍ତ୍ତନୀୟ । ଫିକସନ୍ ତାର ସାଂସ୍କୃତିକତା ଯୋଗୁ ଏବଂ ବ୍ୟକ୍ତିମାନସର ପ୍ରକାଶ ହୋଇଥିବା ଯୋଗୁ ପରିବର୍ତ୍ତନଶୀଳ । ଗଳ୍ପ ବା ଫିକସନ୍ ମିଥ୍‌ର ପର୍ଯ୍ୟାୟକୁ ଛୁଇଁପାରେ, କାରଣ Vaihingerଙ୍କ ଭାଷାରେ ଏଥିରେ ଯାହା ଆପାତସତ୍ୟ, ତାହା ଏକ ଉପପାଦ୍ୟ-ଠାରୁ ଭିନ୍ନ, ଯେହେତୁ ତାହା ଶେଷରେ ମନଗଢ଼ା ବୋଲି ଜଣାପଡ଼େ । ସାହିତ୍ୟିକ ଗଳ୍ପ-ଉପନ୍ୟାସ ବା ଅନ୍ୟ କଥାରେ ଲିଟେରାରୀ ଫିକସନକୁ ଆମେ ଯେଉଁ ସମ୍ମତି ଦେଇଥାଉଁ ତାହା କେବଳ ପରୀକ୍ଷାମୂଳକ ଭାବରେହିଁ ଦେଇଥାଉଁ ।

ଇତିହାସ ଓ ଫିକ୍‌ସନ ମଧ୍ୟ ପରସ୍ପରସଂବନ୍ଧିତ, ପୁଣି ବିଚ୍ଛିନ୍ନ । ବରଂ ଇତି-ହାସ ଅର୍ଥାତ୍ ସମଗ୍ର ଉପରେ ଲଦି ଦିଆଯାଇଥିବା ଘଟନାପୁଞ୍ଜ ମିଥ୍‌ର ସ୍ଥାନ ଅଧିକାର କରି ପାରନ୍ତି । କାର୍ଲ ପପରଙ୍କ ମତରେ ଇତିହାସ ବୋଲି କିଛି ନାହିଁ; ଯାହା ଅଛି ତାହା ଇତିହାସାବଳୀ—ଏହି ଅନ୍ତର୍ଦୃଷ୍ଟି ଦ୍ୱାରା ସେ ଉପନ୍ୟାସକାରକୁହିଁ ଇଂଗିତ କରିଛନ୍ତି । ("There is no history but histories"—Karl Poper) ଏହାର ତାତ୍ପର୍ଯ୍ୟ ହୁଏତ ଏହି ଯେ ଇତିହାସ ଲେଖା ଏକ regulative fiction. Paradigmetic historyର କ୍ରମଅବସାନ ସଂଗେ histriography ଯେ ଫିକ୍‌ସନର ସମସ୍ତ ମୌଳିକ ଉପକରଣର ମୂଳୀଭୂତ ରୂପ, ଏ ସଚେତନତା କ୍ରମେ ବୃଦ୍ଧି ପାଉଛି । ସାହିତ୍ୟରେ କଥାବସ୍ତୁର ଯୋଜନା ବା ଲିଟେରାରୀ ପ୍ଲଟିଂ ଏବଂ ଓସ୍କାର ଓ୍ୱାଇଲଡ୍ ଯାହାକୁ decay of lying ବା ମିଥ୍ୟାର ଅବକ୍ଷୟ କହିଛନ୍ତି, ଏ ସବୁର ସଫୋଷ୍ଟିକେଶନ ବା ଉତ୍କୃଷ୍ଟରୂପକୁହିଁ ଆମେ କଣ ଫିକ୍‌ସନ କହିବା ?

ସାର୍ତ୍ରେଙ୍କ ମତରେ ନଭେଲ ଜୀବନ ନୁହେଁ । ବରଂ ଆମ ଉପରେ ଆମର ଯେଉଁ ଅନନ୍ତ କ୍ଷମତା ଅଛି, ଏହା ତାହାକୁ ଏକ ଶିଶୁ ପରି ଧାରଣ କରେ । ତେଣୁ ଏହା ଅନେକଟା ଜୀବନ ଭଳି । ସେ ଥରେ କହିଥିଲେ ଜୀବନରେ ସବୁକିଛି ପଥ ବନ୍ଦ, ତଥାପି ଆମକୁ କର୍ମ କରିବାକୁ ପଡ଼େ, ତେଣୁ ଆମେ ଜଗତକୁ ବଦଳାଇବାକୁ ଚାହୁଁ, ଯଦି ଯେପରି ଏଠାର ପ୍ରତ୍ୟେକ ଜିନିଷ ସହିତ ତାର ସଂଭାବନାର ସଂପର୍କ କୌଣସି ଅପରିହାର୍ଯ୍ୟ କାରଣ ଦ୍ୱାରା ନୁହେଁ, ମ୍ୟାଜିକ୍ ଦ୍ୱାରା ନିୟନ୍ତ୍ରିତ ! ନଭେଲ ମଧ୍ୟ ଅପରିହାର୍ଯ୍ୟ ପ୍ରଣାଳୀକୁ (determinism) ଅସ୍ୱୀକାର କରେ ଏବଂ ମ୍ୟାଜିକ୍ ମାଧ୍ୟମରେ ଏକ ମୁହୂର୍ତ୍ତ ସ୍ୱାତନ୍ତ୍ର୍ୟର (freedom) ପ୍ରତିଷ୍ଠା ଦାବୀ କରେ । ଏହା ଫଳରେ ଆମେ aventures କରୁ, କେତେକ ସାର୍ଥକ ମୁହୂର୍ତ୍ତକୁ ଏକ ଘଡ଼ିହୀନ ସଂସାରରେ ମାନବୀୟ ଘଡ଼ି ମାଧ୍ୟମରେ ଚଳନ୍ତଶକ୍ତିଯୁକ୍ତ

କରୁଁ । ମୋଟ କଥା ହେଲା ଆମେ ମଣିଷକୁ ତାର ବାହ୍ୟ ସଂଙ୍କଟରେହିଁ ଚିହ୍ନଣ କରୁଁ ଏବଂ ଏଥିରେ ଏକ ଆବହ ବା ପ୍ରସଂଗ ସୃଷ୍ଟି କରୁଁ, ଯାହା ନାହିଁ । Frank Kermode ତାଂକର 'The Sense of an Ending' ଗ୍ରଂଥରେ କହିଛଂତି :

"The novel is a lie only as our quotidian inventions are lies. The power which goes to its making—the imagination—is a function of man's inescapable freedom"

ମଣିଷର ଅପରିହାର୍ଯ୍ୟ ସ୍ୱାଧୀନତା ଭିତରୁହିଁ ଏହି ମିଥ୍ୟାର ଜନ୍ମ । ଏହି ସ୍ୱାତଂତ୍ର୍ୟ ବା ସ୍ୱାଧୀନତାର ସ୍ୱରୂପ କଣ ? ମେରି ଓ୍ୱାରନକ୍‌ଂକ ଭାଷାରେ—

"This freedom expresses itself in his capability to see things which are not."

ଯାହା ନାହିଁ, ତାହା ଅଛି ବୋଲି ଜାଣିବାର ଯେଉଁ କ୍ଷମତା ମଣିଷର ଅଛି ତାହାହିଁ ମଣିଷର ଏଇ ଫ୍ରିଡମ୍‌ର ଅଭିବ୍ୟକ୍ତି ।

ଜଣେ ସ୍ଥିତିବାଦୀ ମଣିଷ ଯିଏ ତାର କର୍ମର ସମସ୍ତ ଦାୟିତ୍ୱ ଗ୍ରହଣ କରେ, କୌଣସି ସଂବଂଧିତ ଅତୀତର ଧାର୍ ଧାରେ ନାହିଁ । ନାୟକ ଏମିତି ଏକ ଜଗତରେ ବାସ କରେ, ଯାହାକୁ ସେ ଯେ ଖାଲି ସୃଷ୍ଟି କରି ନାହିଁ ତା ନୁହେଁ, ତାହା ସୃଷ୍ଟି ମଧ୍ୟ ହୋଇ ନାହିଁ । ଏ ଜଗତରେ "existence preceds essence and in the present he is forsaken" 'ଅର୍ଥାତ୍ ଚେତନା ପୂର୍ବରୁ ସ୍ଥିତି ସ୍ୱୀକୃତ । ପୁଣି ବର୍ତ୍ତମାନ ସ୍ଥିତିରେ ମଣିଷ ପରିତ୍ୟକ୍ତ । ଏ ଜଗତରେ ସବୁ ଖାଲି କର୍ମ । ଗଛଟିଏ ପବନରେ ହଲିଲେ ତାହା ଗଛର କଂପନ ନୁହେଁ, କାର୍ଯ୍ୟ । ନଭେଲ ଯେଉଁ ଜଗତ ସୃଷ୍ଟି କରେ ତାହା ବାସ୍ତବ ଜଗତଠାରୁ ପୃଥକ । ତାହା ଆମର ନିଜ ସୃଷ୍ଟ ଜଗତ । ଏ ଜଗତରେ 'କଂଟିନଜେନସି'ର ବସ୍ତୁଗତ ଲକ୍ଷଣ ଥାଇପାରେ କିଂବା ମଣିଷର ଆବ୍‌ସର୍ଡ଼୍ ସ୍ଥିତିର ଏକ ବିକଳ୍ପ ରୂପ ମିଳିପାରେ—ଯାହା ନାୟକକୁ ନାୟକ ବା ହିରୋ କରେ । (ଫିଲିପ ଥଡିଂକର ସାର୍ତ୍ରଂକ 'ନସିଆ' ନଭେଲ ଉପରେ ମଂତବ୍ୟ) ସାର୍ତ୍ରେ ନିଜେ ମଧ୍ୟ ଥରେ କହିଥିଲେ :

"The final aim of art is to reclaim the world by revealing it as it is but as if it has its sources in human life."

ଏ କଥାର ଅର୍ଥ ଏଇଆ ଯେ ସବୁ କିଛି ଭୟଙ୍କରତା, ସଂକଟ, ବିପର୍ଯ୍ୟୟର ମାନବୀକରଣ କରିବାକୁ ହେବ । ଅର୍ଥାତ୍ ଫ୍ରାଂକ୍ କର୍ମୋଡ଼ ଏହାର ଅର୍ଥ କରିଛନ୍ତି—ବିଶ୍ୱର କଂଟିନ୍‌ଜେନ୍‌ସି ବା ଅନିର୍ଦ୍ଦିଷ୍ଟତାକୁ ଫୁଟାଇବାକୁ ହେଲେ ତାକୁ ହ୍ୟୁମାନାଇଜ୍ କରିବାକୁ ହେବ ।

ଅନେକେ ମନେ କରନ୍ତି ସମୟ ନିର୍ବିଶେଷ ନୁହେଁ । ସମୟ ଅର୍ଥ ଏକ ମଧ୍ୟବର୍ତ୍ତୀ କାଳରୁ (ଟ୍ରାନ୍‌ଜିସନରୁ) ଅନ୍ୟ ଏକ ମଧ୍ୟବର୍ତ୍ତୀ କାଳ । ହାରୋଲ୍ଡ୍ ରୁକେନବର୍ଗ ତ ମନେ କରନ୍ତି ଯେ ବର୍ତ୍ତମାନର ମଧ୍ୟବର୍ତ୍ତି ସମୟ ଚିରନ୍ତନ, ଏହାର ଶେଷ ନାଇ ।

ଜେମସ୍ ଜୟସଙ୍କ 'ୟୁଲିସିସ୍'ର ଚେତନା ପ୍ରବାହ ଗୋଟିଏ ଦିନର ସମସ୍ତ-ପରିଧି ଭିତରେ ପ୍ରବାହିତ । କିନ୍ତୁ ସମୟହୀନତାର ସ୍ପର୍ଶରୁ ବଂଚିତ ନୁହେଁ । ଏଥିରେ ପାଗାନିଜମ୍ ସହିତ ବାସ୍ତବତାର ସଂଘର୍ଷ, ମ୍ଲାଟ୍ ବିନ୍ଦୁରେ ମଣିଷର ସ୍ୱାତନ୍ତ୍ର୍ୟର ସଂଘାତ ସ୍ପଷ୍ଟ । ଏଥିରେ ଜୟସ୍ ମିଥ୍‌କୁ ଏଡ଼ାଇ ପାରିଛନ୍ତି । ଏପରିକି ନେଗେଟିଭ କଂକର୍ଡ଼ର କୌଣସି ମିଥ୍ ମିଳେ ନାଇ ବୋଲି କର୍ମୋଡ଼ଙ୍କର ମତ । ଜୟସ୍ ଥିଲେ ବାସ୍ତବବାଦୀ, କିନ୍ତୁ ଏଲିୟଟ୍ ତାଙ୍କୁ ପ୍ରଶଂସା କରିଛନ୍ତି ଅନ୍ୟ କାରଣରୁ, ମିଥ୍‌ର ଆଧୁନିକୀକରଣ ବା modernize କରିଥିବା ଯୋଗୁ—ଯଦିଚ ଲୁଇ ତାଙ୍କୁ ସାଧାରଣ ଦୃଷ୍ଟିଭଙ୍ଗୀ ଜନିତ ନାନା ବିଶୃଙ୍ଖଳା ପାଇଁ ଦାୟୀ କରିଛନ୍ତି ।

ଆମ ଓଡ଼ିଆ ସାହିତ୍ୟରେ ଚେତନାର ସମୀକରଣ ଆରମ୍ଭ ହେବାକୁ ଅନେକ ଯୁଗ ଲାଗିଯାଇଥିଲା । ଆଧୁନିକ ଓଡ଼ିଆ ଲେଖ ଯେତେବେଳେ ମାର୍କସୀୟ ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦ ଓ ଫ୍ରଏଡୀୟ ଅବଚେତନ ମଧ୍ୟଦେଇ ମଣିଷକୁ ଆବିଷ୍କାର କଲା, ଯେତେବେଳେ ସମଗ୍ର ଭାରତବର୍ଷ ତଥା ଓଡ଼ିଶାର ମଣିଷ ଗୋଟାଏ ମହାଯୁଦ୍ଧର ଧକ୍କା ସଂଭାଳି, ବହୁ ଆଭ୍ୟନ୍ତରୀଣ ସଂଘର୍ଷ ତଥା ଜାତୀୟ ଆନ୍ଦୋଳନ ଓ ଗଣ-ସଂଗ୍ରାମର ସମ୍ମୁଖୀନ ହୋଇ ନାନା ଆଶାଭଙ୍ଗ ଓ ଔପନିବେଶିକ ନିର୍ଯ୍ୟାତନା ମଧ୍ୟରେ କିଛିଦୂର ଅଗ୍ରସର ହୋଇ ଆଉ ଗୋଟାଏ ମହାଯୁଦ୍ଧର ସାମନାସାମନି ଛିଡ଼ା ହୋଇଥିଲା ।

ସାଂପ୍ରତିକ ଓଡ଼ିଆ ଗଳ୍ପ ଯେଉଁ ମଣିଷକୁ ଭେଟିଲା, ସେ ଆଉ ଏକ ଅବି-ଭାଜ୍ୟ ସତ୍ତା ହୋଇ ରହି ନଥିଲା । ସେ ନାନା ସ୍ୱବିରୋଧରେ ବିଭକ୍ତ ଏକ ଖଣ୍ଡିତ ବ୍ୟକ୍ତିତ୍ୱରେ ପରିଣତ ହୋଇଯାଇଛି । ଆଜିର କଥାସାହିତ୍ୟରେ ମଣିଷର ବିଚ୍ଛିନ୍ନତା, ତାର ଛିଡ଼ର ନାନା ଜଟିଳତା ଓ ନିଃସଙ୍ଗତା ସାଂଗକୁ ତାର ଯନ୍ତ୍ରଣା ଯେପରି

ପ୍ରକାଶ ପାଇଛି, ସେହିପରି ପ୍ରକାଶ ପାଇଛି ତାର ଆତ୍ମପରିଚୟର ସଂଧାନ (search for an identity)। ଏଇ ସଂଘର୍ଷ ଓ ଆତ୍ମାନୁସଂଧାନହିଁ ହୋଇଛି ତାର ଗଳ୍ପ।

ବିଂଶ ଶତକର ଲେବେଲ୍ ମାରି ଓଡ଼ିଆ କଥା ସାହିତ୍ୟର ଆଲୋଚନା ଆରଂଭ କଲେ ଆମକୁ ଯେଉଁଟିକି ଦେଖିବାକୁ ହେବ, ତାହା ବାସ୍ତବିକ ୟୁରୋପୀୟ ଅଷ୍ଟାଦଶ ଶତକର ସମତୁଲ୍ୟ ଏକ ଅବସ୍ଥା। ଏକ କୃଷିଭିତ୍ତିକ ସାମଂତତଂତ୍ରୀ ସମାଜରେ ଔପନିବେଶିକ ଶାସନର ବନ୍ଧନୀ ଭିତରେ ଏହାଠୁ ଆଉ ବେଶୀ କିଛି ଆଶା କରାଯାଇ ପାରିନଥାଂତା। ଫକୀରମୋହନଂକୁହିଁ ଆମର ପୂର୍ବସୂରୀ ରୂପେ ଗ୍ରହଣ କରିବାକୁ ହେବ। ଓଡ଼ିଆ ବାଙ୍ମୟକୁ ଏକ ଆଶ୍ଚର୍ଯ୍ୟ ପ୍ରାଣଶକ୍ତିରେ ଉଜ୍ଜ୍ୱଳ କରି ଓଡ଼ିଆ ଚରିତ୍ରକୁ, ତାର ସମାଜ-ସଂପର୍କ ଓ ବ୍ୟକ୍ତିମାନସକୁ ସେ ଯେପରି ଭାବରେ ଅଧ୍ୟୟନ କରିଥିଲେ, ତାହା ତାଂକ ଗଳ୍ପ-ଉପନ୍ୟାସମାନଂକରେ ନିଖୁଣ ରୂପ ପାଇଛି। ମାତ୍ର ତାଂକର ଦୃଷ୍ଟି ସେ ସମୟର ସବୁ ଶ୍ରେଷ୍ଠ କଥାକାରଂକ ପରି ଥିଲା ସରଳ ଓ ଅନାପେକ୍ଷିକ। ମଣିଷର ଚେତନାକୁ ତାର ବାସ୍ତବ ପରିବେଶଠାରୁ ବିଚ୍ଛିନ୍ନ କରି ଦେଖିବାର ଯେଉଁ ଧାରା ସେତେବେଳ ପର୍ଯ୍ୟଂତ ଚାଲି ଆସୁଥିଲା, ସେ ଥିଲେ ଓଡ଼ିଶାରେ ତାହାର ଅଗ୍ରସୂରୀ। ତାଂକ ଦୃଷ୍ଟିରେ ଜୀବନ ଯେପରି ଭଲ ଓ ମଂଦ—ଏଇ ଦୁଇଭାଗରେ ସମାନ ଭାବରେ ବିଭକ୍ତ ! ଗୋଟିଏ ସରଳ ବିଭାଜକ ରେଖା ଟାଣି ସେ ମଣିଷକୁ ଭଲ ଓ ମଂଦ, ପାପ ଓ ପୁଣ୍ୟ ଏଇ ଦୁଇ ଥାକରେ ଅଲଗା ଅଲଗ କରି ରଖି ଯାଇଛଂତି। ଯିଏ ଭଲ ସିଏ ସବୁବେଳେ ଷୋଳ ଅଣା ଭଲ, ଆଉ ଯିଏ ଖରାପ ସିଏ ସବୁବେଳେ ଖରାପ, ଏପରି ଏକ ସ୍ଥୂଳ ଦୃଷ୍ଟି ଏ ଯୁଗରେ ଅଚଳ। ଫକୀରମୋହନଂକ ମଣିଷମାନେ ଯେପରି ଛାଂଚରେ ଢଳା ! ସେମାନଂକ ଭିତରେ କୌଣସି ଅଂତର୍ଦ୍ୱଂଦ୍ୱ ନାହିଁ, ସ୍ୱବିରୋଧ ନାହିଁ। ତାଂକର ଥିଲା ପାପ ସଂବଂଧରେ ଏକ ଅତିକାୟ ସଚେତନତା ଏବଂ ପୁଣ୍ୟ ସଂବଧରେ ଏକ ଅପରିବର୍ତ୍ତିତ ମହନୀୟ ଧାରଣା। ଫକୀରମୋହନଂକ ଚରିତ୍ର ସବୁ ବେଶୀ ଭାଗ type ବା ନକଲର ପରି ବୋଧହୁଅଂତି। ସେମାନେ ଯେପରି ଗୋଟିଏ ଗୋଟିଏ ନିଦର୍ଶନ—ଲେଖକଂକ ବକ୍ତବ୍ୟକୁ ସାବ୍ୟସ୍ତ କରିବାହିଁ ସେମାନଂକର ଯେପରି ଏକମାତ୍ର କାମ ଏବଂ ହୁଏତ ଅଲିଖିତ ଅଦୃଷ୍ଟ ! ମଣିଷର ଦ୍ୱଂଦ୍ୱାକୀର୍ଣ୍ଣ ମନର ସ୍ତରବିନ୍ୟାସ, ଘାତ ପ୍ରତିଘାତ···ସବୁ ଯେପରି ଏକ ସମତଳ ଭୂମି ! ତାଂକ ଶାସ୍ତ୍ରୀୟ ମୂଲ୍ୟବୋଧ ତାଂକୁ ମଣିଷ ସଂବଂଧରେ ଏହାହିଁ ଶିକ୍ଷା ଦେଇଥିଲା। ପରେ ଓଡ଼ିଆ ଚରିତ୍ରକୁ ଏକ ରୋମାଂଟିକ ଛାଂଚରେ ଢାଳିବା ପାଇଁ ଚେଷ୍ଟା କରିଥିଲେ 'ସବୁଜ'। ସେମାନଂକ ଦ୍ୱାରା ଓଡ଼ିଆ କଥାସାହିତ୍ୟର କିଛିଟା ସମୃଦ୍ଧି ସାଧିତ ହୋଇଥିଲା।

ବର୍ତ୍ତମାନ କଥା ହେଉଛି, ଓଡ଼ିଆ ସାହିତ୍ୟରେ ବିଂଶ ଶତକର ଆରମ୍ଭ କେବେ ? କ୍ୟାଲେଣ୍ଡର ବା ଦିନପଞ୍ଜିର ପୃଷ୍ଠାଙ୍କ ଓଲଟାଇ ସେ ଦିନର ସନ୍ଧାନ ମିଳିବ ନାହିଁ । ଆମ ସାହିତ୍ୟରେ ବିଂଶ ଶତାବ୍ଦୀର ଆରମ୍ଭ ସଚେତନ ଭାବରେ ବୋଧହୁଏ ତୃତୀୟ ଦଶକର ଶେଷ ପ୍ରାନ୍ତରେ । ତେବେ ଶତାବ୍ଦୀକୁ ନେଇ ଖୁବ୍ ବେଶୀ ହଟ୍ଟଗୋଳ କରିବା ସାହିତ୍ୟରେ ବୋଧହୁଏ ଠିକ୍ ହେବ ନାହିଁ ।

ୟୁରୋପରେ ମଧ୍ୟ କେତେକ ବିଜ୍ଞବ୍ୟକ୍ତି ମନେ କରିଥାନ୍ତି ଯେ ସେମାନେ ଉପକଥାକୁ ଉଡ଼ାଇ ଦେବା ପରଠାରୁ ଅର୍ଥାତ୍ ୧୯୧୪ ମସିହାରୁ ହିଁ ବିଂଶ ଶତକର ଜନ୍ମ, ୧୯୦୦ ମସିହା ପରେ ନୁହେଁ । କିନ୍ତୁ ୧୯୦୦ ମସିହାର ମଧ୍ୟ କେତେକ ନିଜସ୍ୱ ଦାବୀ ଅଛି, ଯାହାକୁ ସହଜରେ ଉପେକ୍ଷା କରି ହେବ ନାହିଁ । ଏହି ବର୍ଷ ନିତ୍‌ସେ ମୃତ୍ୟୁମୁଖରେ ପଡ଼ନ୍ତି । ଫ୍ରଏଡ୍ ତାଙ୍କର 'The Interpretation of Dreams' ଗ୍ରନ୍ଥ ପ୍ରକାଶ କରନ୍ତି । ଏହି ଗ୍ରନ୍ଥଟି ପ୍ରକାଶ ହେବା ପରେ ମଣିଷ ଆଉ ଏକ ଜଗତର ସନ୍ଧାନ ପାଏ—ତାହା ହେଉଛି ଅବଚେତନ ଜଗତ । ଏହି ଜଗତରେ ସେ ଆବିଷ୍କାର କରେ ତାର ମନ୍ଦଚେତନାକୁ—ତାର ଅବଦମିତ ସମଗ୍ର ସତ୍ତାକୁ; ଯାହା ଏତେଦିନ ଅନ୍ଧକାରରେ ହିଁ ଥିଲା ।

ଏହି ବର୍ଷ Husserଙ୍କ Logic ଏବଂ ରସେଲଙ୍କ Exposition of the Philosophy of Leibniz ପ୍ରକାଶ ପାଏ । ବର୍ଷର ସର୍ବଶେଷ ମୁହୂର୍ତ୍ତରେ (ଡିସେମ୍ବର, ୧୯୦୦) Planck ତାଙ୍କର ଯୁଗାନ୍ତକାରୀ କ୍ୱାଣ୍ଟମ ହାଇପୋଥେସିସ୍ ଗ୍ରନ୍ଥଟି ପ୍ରକାଶ କରନ୍ତି—ଯାହା ଫଳରେ ଅଳ୍ପ କେତେମାସ ମଧ୍ୟରେ ଆଧ୍ୟାତ୍ମିକତାର ପୁନର୍ମୂଲ୍ୟାୟନ, ଭାଷା ସହିତ ଜ୍ଞାନର ସମ୍ପର୍କ ଏବଂ ମଣିଷ ସୃଷ୍ଟିରେ ଅନିଶ୍ଚିତତା ଯେ ଏକ ପ୍ରାକୃତିକ ନିୟମ—ଏସବୁ ତତ୍ତ୍ୱ ପ୍ରତିଷ୍ଠା ଲାଭ କରେ । ଏହି ବର୍ଷ *fin de siecle* ବା ବାସ୍ତବବିମୁଖ ପଳାୟନ ମନୋଭାବ ଏକ କଠୋର ଐତିହାସିକ ପ୍ରଳୟ-ଧାରଣା ( *finish secculi* ) ଦ୍ୱାରା ସ୍ଥାନଚ୍ୟୁତ ହୁଏ ଯେପରି ୧୭୦୦, ୧୮୦୦ ଏବଂ ୧୦୦୦ ମସିହାମାନଙ୍କରେ ହୋଇଥିଲା ।

ମାତ୍ର ୧୯୦୦ ମସିହାରେ ବା ତହିଁର ଅବ୍ୟବହିତ ପରେ ଆମ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ କିମ୍ବା ଓଡ଼ିଶାର ଚିନ୍ତନ ବା ମନନ-ଜଗତରେ କଣ ଘଟିଥିଲା ? ବୋଧ-ହୁଏ କିଛି ନାହିଁ । ତେଣୁ ଆମ ସାହିତ୍ୟରେ ବିଂଶ ଶତାବ୍ଦୀର ଆବିର୍ଭାବ କେବେ ତାହା ଚିହ୍ନୋଟ କରିବା ଏକ ଅସମ୍ଭବ ବ୍ୟାପାର । ତଥାପି ଏହି ଶତକର ତୃତୀୟ ଦଶକର ଶେଷ ଭାଗରୁ ଓଡ଼ିଆ କଥା ସାହିତ୍ୟରେ ଆଶ୍ଚର୍ଯ୍ୟ ଅଭିବୃଦ୍ଧି ସାଧିତ ହୋଇଛି । ଏଥିରେ ମଣିଷର ନିଃସଙ୍ଗତା ଓ ଯନ୍ତ୍ରଣା ସାଙ୍ଗକୁ ତାର ନିଜକୁ ଆବିଷ୍କାର କରିବାର ଉଦ୍‌ଗ୍ରୀ-

ପ୍ରଧାନ ସାର୍ଥକ ଅଭିବ୍ୟକ୍ତି ଲାଭ କରିଛି । ବହୁ ବଳିଷ୍ଠ ଲେଖକ ଲେଖିକା ଏହି ଦଶନ୍ଧିମାନଙ୍କରେ ଓଡ଼ିଆ ଗଳ୍ପକୁ ଆଧୁନିକତାର ଆବୃତ୍ତନ ଭିତରକୁ ଟାଣି ଆଣି ତାହାର ସମ୍ଭାବନାକୁ ନୂତନ ରୂପରେଖ ଦେଇଛନ୍ତି । ମାତ୍ର ନୂତନ କଥାକାରମାନେ ମଣିଷର ନିଃସଙ୍ଗତାକୁ ଗଳ୍ପର ଏକମାତ୍ର ଉପଜୀବ୍ୟ ରୂପେ ଦେଖିବା ଯଥାର୍ଥ ଜୀବନ-ଜିଜ୍ଞାସାର ପ୍ରତିଫଳନ ନୁହେଁ । ମାର୍କିଣ କଥାକାର ସଲବେଲୋ ଓ୍ୱେଷ୍ଟଲ୍ୟାଣ୍ଡିଜମ ଉପରେ ଆକ୍ରମଣ କରିବା ପଛରେ ଏହି ମନୋଭାବହିଁ ନିହିତ । ବିଚ୍ଛିନ୍ନତା (alienation) ଯୁଗ-ଯନ୍ତ୍ରଣାର ଏକମାତ୍ର କଥା ନୁହେଁ, ଏକଥା ସେମାନଙ୍କ ଲେଖନୀରେ ମହତ୍ତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟ ଲାଭ କରେ । ମଣିଷର ବହୁଧା ବିଚିତ୍ର ସତ୍ତା ଯେ ତାର ସାହିତ୍ୟର ମୂଳ ଉତ୍ସ—ଏକଥା ଆଜି ସାହିତ୍ୟସ୍ରଷ୍ଟା ଅନୁଭବ କରିବା ଦରକାର ।

□□□

# ଆଧୁନିକ ସାହିତ୍ୟ ବୀକ୍ଷା

## ( 'ହାର୍ଭର୍ଡ଼ ବିଶ୍ୱବିଦ୍ୟାଳୟ କଳା-ବିଜ୍ଞାନ ସେମିନାର' )

[ ଲେଖକ ଆମେରିକାର ହାର୍ଭର୍ଡ଼ ବିଶ୍ୱବିଦ୍ୟାଳୟଙ୍କ ଆମଂତ୍ରଣକ୍ରମେ ହାର୍ଭର୍ଡ଼ ବିଶ୍ୱବିଦ୍ୟାଳୟ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାର୍‌ରେ ପ୍ରଥମ ଦିନର ଅଧିବେଶନ ଉଦ୍‌ଘାଟନ କରି ଯେଉଁ ଭିତ୍ତି-ଭାଷଣ ଦେଇଥିଲେ ତାହାର ସାରାଂଶ ସହିତ ଆଧୁନିକ କବିତା, ଗଳ୍ପ, ଉପନ୍ୟାସ ପ୍ରଭୃତି ସଂବଂଧରେ ଆଂତର୍ଜାତିକ ସ୍ତରରେ ଯେଉଁସବୁ ଆଲୋଚନା ହୋଇଥିଲା, ତାହାର ସଂକ୍ଷିପ୍ତ ବିବରଣୀ ଏହି ନିବଂଧରେ ଲିପିବଦ୍ଧ କରିଛଂତି । ]

୧୯୫୫ ମସିହାରେ ଆମେରିକାର ହାର୍ଭାର୍ଡ ବିଶ୍ୱବିଦ୍ୟାଳୟକୁ ନିମନ୍ତ୍ରଣ ଚିଠି ପାଇଲି । ଚିଠି ଲେଖିଥିଲେ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟର ଇତିହାସ ବିଭାଗର ଡକ୍ଟର ହେନେରୀ. ଏ. କିସିଂଜର । ଡଃ କିସିଂଜର ସେତେବେଳେ ଉକ୍ତ ବିଶ୍ୱବିଦ୍ୟାଳୟର ସହଯୋଗୀ (ଆସୋସିଏଟ୍) ଇତିହାସ ଅଧ୍ୟାପକ ଥାଆନ୍ତି । ପରେ ଅବଶ୍ୟ ସେ ଆମେରିକା ଯୁକ୍ତରାଷ୍ଟ୍ରର ବୈଦେଶିକ ସଚିବ ଏବଂ ସ୍ୱରାଷ୍ଟ୍ର ସଚିବ ହୋଇଥିଲେ ଏବଂ ପରେ ୧୯୭୪ ମସିହାରେ ଉତ୍ତର ଭିଏତନାମର ଥୋଙ୍କ ସହ ବିଶ୍ୱଶାନ୍ତି ପାଇଁ ନୋବେଲ ପୁରସ୍କାର ପାଇଥିଲେ । ମାତ୍ର ସେତେବେଳେ ଆମେ କଳ୍ପନା କରି ପାରି ନଥିଲୁଁ ଯେ ହାର୍ଭାର୍ଡର ସେଇ ସାଦାସିଧା Associate Professor ଜଣକ ଦିନେ ଜଣେ ବିଶ୍ୱବିଖ୍ୟାତ କୂଟନୀତିଜ୍ଞ ହେବେ । ଡଃ କିସିଂଜର ଲେଖିଥିଲେ :

Harvard University  7.4. 1955
International Seminar of
Arts & Science
Cambridge, U.S.A.

Dear Mr. Raut-Roy,

I am happy to inform you that you have been selected as a participant in the 1955 session of the Harvard International Seminar of Arts and Science lasting from July 4 to August 24, 1955. I wish the technical arrangements were less complex, making it possible for me to write you a more personal letter. But technical problems loom so large at the moment, I will avail myself of the opportunity to speak to you of them. × × × ×

The Harvard University will assume all your expenses, including air passage to and from the United States, room, board and an adequate weekly allowance for your personal expenses ........

In order to assist our planning, we should appreciate your notifying us whether you can accept your place in the Seminar.

Looking forward to meeting you in Harvard.

Sincerely Yours
Henry A. Kissinger

ଅର୍ଥାତ୍ "ମୁଁ ଆନନ୍ଦର ସହିତ ଜଣାଉଛି ଯେ ଆପଣ ହାର୍ଭର୍ଡ଼ ବିଶ୍ୱବିଦ୍ୟାଳୟ ଆନ୍ତର୍ଜାତିକ କଳା-ବିଜ୍ଞାନ ସେମିନାରର ୧୯୫୫ ମସିହା ଅଧିବେଶନରେ ଅଂଶ-ଗ୍ରହଣ କରିବା ପାଇଁ ମନୋନୀତ ହୋଇଛନ୍ତି । ଏ ସେମିନାର ହାର୍ଭର୍ଡ଼ଠାରେ ଜୁଲାଇ ତା ୫ରୁ ଆରମ୍ଭ ହୋଇ ଅଗଷ୍ଟ ତା ୨୪, ୧୯୫୫ ପର୍ଯ୍ୟନ୍ତ ପ୍ରାୟ ଦୁଇ ମାସ ଚାଲିବ । ଆପଣଙ୍କର ଉଡ଼ାଜାହାଜରେ ଆମେରିକା ଯୁକ୍ତରାଷ୍ଟ୍ରକୁ ଯିବାଆସିବା ଖର୍ଚ୍ଚ ଏବଂ ସେଠାରେ ରହିବା, ଖିଆପିଆ ଖରଚ ଏବଂ ଯଥେଷ୍ଟ ପରିମାଣରେ ସାପ୍ତାହିକ ଭତ୍ତା ବିଶ୍ୱବିଦ୍ୟାଳୟ ବହନ କରିବ । ଆପଣ ଆମ ନିମନ୍ତ୍ରଣ ରକ୍ଷା କରି ସେମିନାର୍‌ରେ ଅଂଶ ଗ୍ରହଣ କରିବାକୁ ସକ୍ଷମ ହେବେ କି ନାହିଁ ତାହା ଜଣାଇବାକୁ ମୁଁ ଅନୁରୋଧ କରୁଛି ।" ଏହାଛଡ଼ା ଚିଠିରେ ନାନା ପ୍ରଥାଗତ ବିଷୟ, ଯଥା ଭିସା ଇତ୍ୟାଦି ସମ୍ବନ୍ଧରେ ମଧ୍ୟ ସେ କେତେକ ବିବରଣୀ ଦେଇଥିଲେ ।

ମୁଁ ସେତେବେଳେ କଲିକତାରେ କେଶୋରାମ କଟନ ମିଲସ୍‌ରେ ଏକ୍‌ଜିକ୍ୟୁଟିଭ୍ ଅଫିସର ରୂପେ କାର୍ଯ୍ୟ କରୁଥାଏ । କହିବା ବାହୁଲ୍ୟ ଯେ ମୁଁ ଏହି ଆନ୍ତର୍ଜାତିକ ଆଲୋଚନାଚକ୍ର ବା ସେମିନାରରେ ଯୋଗଦେବାକୁ ମୋର ସମ୍ମତି ଜଣାଇଥିଲି । ତା'ପରେ ସେ ମୋତେ ମୋର ବକ୍ତୃତାର ବିଷୟବସ୍ତୁ କଣ ହେବ ତାହା ପରାମର୍ଶ ପତ୍ର ଦେଇଥିଲେ । ମୋର ବକ୍ତୃତାର ବିଷୟବସ୍ତୁ ଥିଲା : "ସମସାମୟିକ ଚେତନାର ସୂଚକ (index) ରୂପେ ଭାରତୀୟ ସାହିତ୍ୟ" । ଏହା ଛଡ଼ା ସେ ମୋତେ "ଭାରତରେ ଔଦ୍ୟୋଗିକ ସମ୍ପର୍କ ଏବଂ ଶ୍ରମିକ କଲ୍ୟାଣ" (Industrial Relations and Labour Welfare in India) ବିଷୟବସ୍ତୁ ଉପରେ କେତୋଟି ଭାଷଣ ଦେବା ପାଇଁ ଅନୁରୋଧ କରିଥିଲେ । ମୁଁ ଆନନ୍ଦରେ ସମ୍ମତି ଦେଇଥିଲି । ଏହାର କାରଣ ବୋଧହୁଏ ଏଇଆ ଯେ ମୁଁ ତିନି ବର୍ଷ ପୂର୍ବେ ୧୯୫୨ ମସିହାରେ ଭାରତ ସରକାରଙ୍କ ପ୍ରତିନିଧିରୂପେ ଅଷ୍ଟ୍ରେଲିଆ ଏବଂ ନ୍ୟୁଜିଲାଣ୍ଡଠାରେ Colombo Plan ଅନୁଯାୟୀ ଅନୁଷ୍ଠିତ ଆନ୍ତର୍ଜାତିକ ସମାଜ କଲ୍ୟାଣ ସେମିନାରରେ ଯୋଗ ଦେଇଥିଲି । ଏ ସେମିନାର ପ୍ରାୟ ଦୁଇ ମାସ ଚାଲିଥିଲା ।

ଯେତେବେଳେ ଭାରତ ସରକାରଙ୍କ ପ୍ରଧାନମନ୍ତ୍ରୀ ରୂପେ ଶ୍ରୀ ଜ. ଭି. ଗିରି (ପରେ ରାଷ୍ଟ୍ରପତି) ଥାଆନ୍ତି । ତାଙ୍କ ନିର୍ଦ୍ଦେଶରେ ମୁଁ ଅଷ୍ଟ୍ରେଲିଆ ଓ ନ୍ୟୁଜିଲାଣ୍ଡ ସେମିନାରରେ ଭାରତର ପ୍ରତିନିଧିତ୍ୱ କରିଥିଲି । ସେଥିପାଇଁ ବୋଧହୁଏ ସେ ବ୍ୟକ୍ତିଗତ ଚିଠିଟିଏ ଲେଖିଥିଲେ । ✲

## ସମକାଳୀନ ଦୃଶ୍ୟପଟ :

॥ ଆମେରିକୀୟ ସାହିତ୍ୟ ॥

କଳା ସାହିତ୍ୟ ସଂକ୍ରାନ୍ତୀୟ ଆଲୋଚନାଚକ୍ରର ପ୍ରଥମ ଦିନର ଅଧିବେଶନ ଉଦ୍‌ଘାଟନ କରି ମୋତେ ପ୍ରଥମ ଭାଷଣ ଦେବାପାଇଁ ଡକ୍ଟର କମିଂଙ୍କର ଅନୁରୋଧ କରିଥିଲେ । ଏହି ପ୍ରାରମ୍ଭିକ ଅଧିବେଶନର ସଭାପତି ଥାଆନ୍ତି ଆମେରିକାର ପ୍ରଖ୍ୟାତ କବି ଅଧ୍ୟାପକ ଉଇଲବର (Wilbur) । ସେ ଅମେରିକାର କବିତାର ଗତି ଏବଂ ବିକାଶଧାରା ସମ୍ପର୍କରେ ଏବଂ ତୁଳନାମୂଳକ ଭାବେ ସାମ୍ପ୍ରତିକ ଇଂରାଜୀ କବିତାର ଗତି ଓ ପ୍ରକୃତି ଉପରେ ଆଲୋକପାତ କରିଥିଲେ । ତାଙ୍କ ମତରେ ସମକାଳୀନ ଆମେରିକାନ କାବ୍ୟିକ ପରମ୍ପରାର ମୂଳ ଆଭିମୁଖ୍ୟ ମୁଖ୍ୟତ ଏଡ୍‌ଗାର ଆଲେନ୍ ପୋଙ୍କ ରସତତ୍ତ୍ୱ ଦ୍ୱାରା ହିଁ ପ୍ରଭାବିତ । ପୋଙ୍କ ମତରେ ହୁଇଟମ୍ୟାନ ପରବର୍ତ୍ତୀ ଆମେରିକାନ କବିତା ସତ୍ୟ ଅପେକ୍ଷା ସୌନ୍ଦର୍ଯ୍ୟକୁ, ଅନୁଭୂତିର ଯୌକ୍ତିକ ବା ବା ହେତୁବାଦୀ ପ୍ରକାଶ ଅପେକ୍ଷା ଅବଚେତନକୁହିଁ ଅଧିକ ସମାଦର କରେ ।

"Preoccupation with beauty rather than with truth, interest in the subconscious rather than the logical and rational respect for feeling, rather than intellection; and for the imagination rather than representation."

ସେ ଏ ଯୁଗର ବୈଜ୍ଞାନିକ କର୍ମ ଓ କାବ୍ୟିକ କର୍ମ ମଧ୍ୟରେ ବିପୁଳ ବ୍ୟବଧାନ ଲକ୍ଷ୍ୟ କରିପାରିଥିଲେ । ଏଇ ବ୍ୟବଧାନଟି ହେଉଛି ସତ୍ୟର ସଂଗଠନ ଏବଂ ସତ୍ୟ-ଠାରୁ ଦୂରକୁ ଅପସରି ଯିବାର ବ୍ୟବଧାନ । ପୋଙ୍କ ମତରେ, ଭଲ କବିତା ସଂକ୍ଷିପ୍ତ ଏବଂ ବର୍ଣ୍ଣନାରହିତ ହେବା ଆବଶ୍ୟକ । ପୋଙ୍କର ଏହି "doctrine of

✲ ମୋର "କମିଂକର—ମୁଁ ତାଙ୍କୁ ଯେପରି ଭାବରେ ଜାଣେ" ଶୀର୍ଷକ ପ୍ରବନ୍ଧ ଦ୍ରଷ୍ଟବ୍ୟ । "ନବ ରବି", ଜାନୁଆରୀ, ୧୯୬୪ ।

exclusiveness and limitation" ଅବଶ୍ୟ ହ୍ୱିଟ୍‌ମ୍ୟାନ୍ ଓ ଡିକିନ୍‌ସନ୍‌ଂକ କ୍ଷେତ୍ରେ ପ୍ରଯୋଜ୍ୟ ହୋଇନପାରେ । ଏ ଦୁହିଁଙ୍କ ଏହି ଶିବିରର ଅଂତର୍ଭୁକ୍ତ କରା ନଗଲେ ମଧ୍ୟ ଅନ୍ୟାନ୍ୟ ବହୁ ଆମେରିକାନ କବିଂକୁ ଏହି ଶ୍ରେଣୀର ଅଂତର୍ଗତ କରାଯାଇପାରେ । ସେମାନେ ବିଶେଷଜ୍ଞମାନଂକ ଜିମ୍‌ମା ଜ୍ଞାନ ଓ ଚିନ୍ତାକୁ, ଶାସ୍ତ୍ରବିତ୍ (ଥିଓଲୋଜିଷ୍ଟ) ମାନଂକ ଜିମ୍‌ମା ଧର୍ମକୁ, ସାଂବାଦିକମାନଂକ ଜିମ୍‌ମା ଦୈନଂଦିନ ଜୀବନକୁ ଏବଂ ପ୍ରାକୃତିକବିଜ୍ଞାନୀଂକ ଜିମା ପ୍ରକୃତିକୁ ଛାଡ଼ିଦେବାର ପକ୍ଷପାତୀ । ସେମାନଂକ ମୂଳ ଧ୍ୱନି ହେଲା—"isolation from the substantial than connection with it," ଅର୍ଥାତ୍ କବିତାର ଆଧେୟ ବସ୍ତୁଜଗତଠାରୁ ବିଚ୍ଛିନ୍ନତା,—ଏହା ସହିତ ସଂପର୍କ ସ୍ଥାପନ ନୁହେଁ । ଉଦାହରଣ ସ୍ୱରୂପ ରବର୍ଟ ଫ୍ରଷ୍ଟ ମଣିଷର ନିଃସଂଗତାକୁ ହିଁ ତାଂକ କାବ୍ୟର ଉପଜୀବ୍ୟରୂପେ ଗ୍ରହଣ କରିଛଂତି । ପ୍ରକୃତି ଓ ମଣିଷ ମଧ୍ୟରେ ଅନୁଭୂତିଗତ ପାରସ୍ପରିକତାର ଅଭାବ, ଯାହାକୁ ସେ କାଂଥ-ତୁଣୀକ ମାଧ୍ୟମରେ ଅଭିବ୍ୟକ୍ତ କରିଛଂତି, ତାଂକ କବିତାରେ ବେଶ ପରିସ୍ଫୁଟ ।

ହୁଇଲବର ଗତ ଦୁଇ ଦଶଂଧିର (୧୯୪୦-୫୫) କାବ୍ୟଧାରା ପର୍ଯ୍ୟାଲୋଚନା କରି ଦେଖାଇଥିଲେ ଯେ କବିତାକୁ ବ୍ୟାପକ ଓ ପ୍ରଶସ୍ତ କରିବାର ଆବଶ୍ୟକତା ଦେଖା ଦେଇଛି । କ୍ଲିଂଥ ବ୍ରୁକସ୍ ଏହାକୁ 'strategy of inclusion' ଆଖ୍ୟା ଦେଇଛଂତି । କୋଲେରିଜ୍‌ଂକର ସେହି ସତ୍ୟବାଣୀ :

> "It is the function of poetry to bring the whole soul of man into action, to balance and reconcile discordant elements." ସ୍ମରଣୀୟ ।

ଅଧ୍ୟାପକ କବି ହୁଇଲବର ସୂଚାଇଥିଲେ ଯେ କୋଲେରିଜ୍ "ବୈଷମ୍ୟ ଓ ଅସମଂଜସ ମଧ୍ୟରେ ସମନ୍ୱୟ ସାଧନ କବିତାର ଧର୍ମ" ବୋଲି ଯାହା କହିଛଂତି ତାହା କୃତ୍ରିମ ପ୍ରଣାଳୀରେ ହାସଲ କରାଯାଇ ନପାରେ । ସେ ଓ୍ୱାଲେସ ଷ୍ଟିଭେନସ୍‌ଂକ କବିତା "Flyer's Fall'ର ଦୃଷ୍ଟାଂତ ଦେଇଥିଲେ । ଏଥିରେ ବିଷମ ବସ୍ତୁର କୃତ୍ରିମ ସଂଶ୍ଳେଷଣ କରାଯାଇଛି । ଆମ କାଳର ଏକ ସମନ୍ୱିତ ଚେତନା (unified sensibility) ଆଡ଼କୁ ଦୃଷ୍ଟି ପ୍ରସାରିତ କରାଯାଇଛି ।' ଯାହା ଟୁକୁଡ଼ାରେ ବିଭକ୍ତ । ହୁଇଲବର ଦର୍ଶାଇଥିଲେ : କ୍ଲିଂଥ୍ ବ୍ରୁକସ୍‌ଂକର 'strategy of inclusion' ବା ଅଂତଃକରଣ ପଦ୍ଧତି ଅନେକ ଆଧୁନିକ ଆମେରିକୀୟ କବିଂକୁ ସୁହାଉ ନାହିଁ । ଉଦାହରଣ ସ୍ୱରୂପ ଇ. ଇ.କମିଂଗସ୍‌ଂକର ଟାଇପ୍ ରାଇଟରୀୟ କୌଶଳ (typographical trickery), ଗେର୍‌ଟ୍ରୁଡ୍ ଷ୍ଟେନ୍‌ଂକର ଭାଷାକୁ

ଧ୍ୱନିରେ ପରିଣତ କରିବାର ପ୍ରଚେଷ୍ଟା, ତଥାକଥିତ 'ଅବଜେକ୍ଟିଭିଷ୍ଟ' ମାନଂକର କୌଣସି ବକ୍ତବ୍ୟ ବା ବିକୃତିକୁ ବାଦ୍ ଦେଇ ବସ୍ତୁର ଚିତ୍ରାୟନ ଉଦ୍ୟମ ଏହାର ଜ୍ୱଳଂତ ଉଦାହରଣ । ଏଲିଜାବେଥ୍ ବିଷପଂକର "The Fish କବିତାଟି ଆବୃତ୍ତି କରି ସେ ବସ୍ତୁପ୍ରାଧାନ୍ୟର ନିଦର୍ଶନ ଦେଇଥିଲେ ।

ପ୍ରଖ୍ୟାତ ଇଂରାଜୀ କବି ମିଃ ହ୍ୟୁଥ୍ ଷ୍ଟିଵର୍ଥ୍ ଆଲୋଚନାରେ ଭାଗ ନେଇ କହି-ଥିଲେ ଯେ ହୋମରୀୟ hit-and-run ପ୍ରଣାଳୀ ସହିତ ମିଲଟନୀୟ ପ୍ରତୀକୀ—ଚିତ୍ରକଳ୍ପମୂଳକ କବିତା ମଧ୍ୟରେ ଅନେକ ପାର୍ଥକ୍ୟ ରହିଛି । ଆଧୁନିକ ଆମେରିକୀୟ କବିତା କ୍ଷେତ୍ରରେ ତାହା ହିଁ ଘଟିଛି ।

ପ୍ରସିଦ୍ଧ ଫରାସୀ କବି ଡ଼ମୁର ଦର୍ଶାଇଥିଲେ ଯେ hit-and-run ଶ୍ରେଣୀୟ କବିତା ହିଁ ଆଧୁନିକ ଫରାସୀ କାବ୍ୟ କ୍ଷେତ୍ରରେ ଅଧିକ ଦେଖା ଯାଉଛି, ଏହି ଅର୍ଥରେ ଯେ ଜଗତକୁ ଶବ୍ଦରେ ପରିଣତ କରିବାର ଗୋଟାଏ ପ୍ରବଳ ସ୍ରୋତ ଚାଲିଛି, ବାଗ୍ ଜଗତର ସମସ୍ତ ଅଂଶକୁ ମୁକ୍ତ ଭାବରେ ତୁଳନା କରି ତିନିଜଣ ପୋଂଙ୍କ କାବ୍ୟତତ୍ତ୍ୱ ନିକଟରେ ଋଣୀ ବିଶିଷ୍ଟ ପୂର୍ବସୂରି, ଯଥା ବୁଦେ଼୍ଲଅର, ମାଲର୍ମେ, ଏବଂ ଭାଲେରୀଂକ ମଧ୍ୟରୁ ଶେଷ ଦୁଇଜଣ ହେତୁବାଦୀ ବୋଲି ସେ କହିଥିଲେ ।

## କବିତାର ଭାଷା :

ବିଶିଷ୍ଟ ଇଂରାଜୀ କବି ମିଃ ହ୍ୟୁଥ୍-ଷ୍ଟିଵସ କବିତା ସଂପର୍କୀୟ ଆଲୋଚନା ଆରଂଭ କରି କହିଥିଲେ ଯେ ଶବ୍ଦ ଓ ଶବ୍ଦ ମଧ୍ୟବର୍ତ୍ତୀ ଶ୍ରେଣ୍ ଦ୍ୱାରା କବିତା ସୀମିତ । କବିତା କେବଳ ଭାଷାର ଫରମାଲାଇଜେସନ ମାତ୍ର । ଏପରିକି କବିତାର ଛଂନ୍ଦ ମଧ୍ୟ ଲିଖିତ ଭାଷାର ଏକ ସ୍ୱାଭାବିକ ଶୈଳୀକରଣ (stylisation) ଛଡ଼ା ଅନ୍ୟ କିଛି ନୁହେଁ । କାରଣ ଏହା ସବୁବେଳେ ଏକ ଅହେତୁକ (non-logical) ଗୁରୁ (stress) ସୃଷ୍ଟି କରି ସୂଚନାତ୍ମକ emphasis ବା ଗୁରୁତ୍ୱ ରଚନା କରିଥାଏ । ସତରେ, ଭାଷାର ଅପରିପୂର୍ଣ୍ଣତାରେ ହିଁ କବିତାର ଆନଂଦ । ଏଠାରେ ଅବଶ୍ୟ ଭାଷାକୁ ଏକ ଲଜିକାଲ ଇନଷ୍ଟ୍ରୁମେଂଟ ହିସାବରେ ବୁଝିବାକୁ ହେବ ।

ବିଜ୍ଞାନରେ—ସାହାରଣ ବିଶୁଦ୍ଧତମ ଭାଷା ହେଉଛି ଗଣିତ, ପ୍ରଧାନ ଲକ୍ଷ୍ୟ ହେଉଛି ଅର୍ଥର ବ୍ୟାହତି (exclusion of meaning); କବିତାରେ ସଚେତନ ପ୍ରଚେଷ୍ଟା ଚାଲିଥାଏ ଭାଷାର ଅଂତଃକରଣ ସାଧନ ବା ଏହାକୁ inclu-sive କରି ଏହାକୁ ଅସ୍ପଷ୍ଟତା (ambiguous) ଆଡ଼କୁ ନେଇଯିବା,—

ଛତାଶବ୍ଦ (umbrella-words) ସୃଷ୍ଟି କରିବା—ଯାହା ବହୁ ଅର୍ଥକୁ ଧାରଣ କରି ପାରିବ । ଇଂରାଜୀ ଦେ ହରୁ ସ୍ୱଭାବତଃ ପ୍ରତୀକଧର୍ମୀ । ସେଥିପାଇଁ ଇଂରାଜୀ କବିତାର ଲଜିକାଲ୍ ବ୍ୟାଖ୍ୟା ଉପରେ ଜୋର ଦେବା ସବୁବେଳେ ଅବହେଳନୀୟ ବିଷୟ ହୋଇ ରହିଛି । ବରଂ କବିତାରେ ପ୍ରି-ଲଜିକାଲ ପ୍ରଣାଳୀର ଯୁକ୍ତି କବିତାର ମୌଳିକ ଉପାଦାନ ବୋଲି ସ୍ୱୀକୃତ ଲାଭ କରିଛି ।

କାବ୍ୟିକ ଭାଷା ସଂବନ୍ଧରେ ମିଃ ଷ୍ଟବସ୍ କହିଥିଲେ ଯେ କବିତାର ଭାଷା ଓ ବିଜ୍ଞାନର ଭାଷା କୋଟିଏ ବିଷୟରେ ପରସ୍ପରର ନିକଟବର୍ତ୍ତୀ ବୋଲି ସମସ୍ତେ ଲକ୍ଷ୍ୟ କରିଥିବେ । ବିଜ୍ଞାନର ଭାଷା ବୌଦ୍ଧିକ ଏବଂ କବିତାର ଭାଷା ଆବେଗିକ ବୋଲି ଅପ୍ରବାଦ୍ୟ ଶୁଣାଯାଏ । ପୁଣି ବି କୁହାଯାଏ ଯେ ବିଜ୍ଞାନ ସତ୍ୟ, କବିତା ସୌନ୍ଦର୍ଯ୍ୟ । ଏ ପ୍ରକାର କଥା ଭିତ୍ତିହୀନ । କାରଣ ବୈଜ୍ଞାନିକ କଳ୍ପନା ଏବଂ କବିତାରେ ପ୍ରାୟ ଏକ ପ୍ରକାରେ ସୃଜନୀକ୍ରିୟା ଅନ୍ତର୍ନିହିତ । ଉଭୟ ହିଁ ସହଜାତ-ପ୍ରବୃତ୍ତିଜନିତ ଅନ୍ତର୍ଦୃଷ୍ଟି,—ଯାହା କେତେକ ପରୀକ୍ଷା ଉପରେ ନିର୍ଭରଶୀଳ । ଦୁହିଁଙ୍କର ଲକ୍ଷ୍ୟ "to create some kind of cosmos out of the chaos presented to the senses." ଅବଶ୍ୟ ଏହା ସତ୍ୟ ଯେ ବୈଜ୍ଞାନିକମାନେ ସହଜାତ ପ୍ରବୃତ୍ତିରୁ କେତେକ ବିଜ୍ଞାନସମ୍ମତ ନିୟମ (laws) ପ୍ରତିପାଦନ କରିବାକୁ ଚେଷ୍ଟା କରନ୍ତି—ଯେଉଁଥିରୁ କି କିଛି ଉପପାଦନ ବା ଉଦ୍‌ଭାବନ ହୋଇପାରିବ । କିନ୍ତୁ କବି ସହଜାତ ପ୍ରବୃତ୍ତିରୁ କେତେକ ମୂଲ୍ୟବୋଧର ସ୍ତର ସୃଷ୍ଟି କରିଥାଏ ଯାହା କାର୍ଯ୍ୟ ଏବଂ ବିଶ୍ୱାସର ଭିତ୍ତି ହୋଇଥାଏ ।

## ଆଧୁନିକ ଇଂରାଜୀ କବିତା :

ଇଂରାଜୀ କବିମାନଙ୍କର ଆର୍ଥିକ ସ୍ଥିତି ସ୍ୱଚ୍ଛଳ ନୁହେଁ ବୋଲି ମିଃ ଷ୍ଟବସ୍ କହିଥିଲେ । ସେମାନେ ସାଧାରଣତଃ BBC କିଂବା ବାହାରେ ଲେକଚର ଦେଇ କିଛି ରୋଜଗାର କରିବା ଉପରେ ବେଶୀ ନିର୍ଭର କରିଥାନ୍ତି, ନିଜ ବହିର ଆୟ ଅପେକ୍ଷା । ତୃତୀୟ ଦଶକରେ ଯେଉଁ ବାମ-ପନ୍ଥୀ ଆଭିମୁଖ୍ୟ ଥିଲା ତାହା ଆଉ ଏବେ ନାହିଁ । ୧୯୪୦-୫୦ରେ ଅର୍ଥନୀତିକ ଓ ରାଜନୀତିକ ଆଗ୍ରହର ସ୍ଥାନ ଏବେ ନିର୍ଜ୍ଜନ ମନ, quasi-mystical speculations ଏବଂ ଛନ୍ଦ ଓ ମେଳର ନିର୍ମାଣାତ୍ମକ ପ୍ରୟୋଗ, ଯଥା ଡିଲନ୍ ଥୋମାସ୍, ଜର୍ଜ ବାର୍କର, ଡ୍ୟାଭିଡ୍ ଗ୍ୟାସ୍‌କୋନ ପ୍ରମୁଖ । ଏହି ସମୟରେ ମଧ୍ୟ ରକ୍ଷଣଶୀଳ ଧର୍ମୀୟ କବିତାରେ ଆତ୍ମିକରେ ଅନ୍ତର୍-ଦୃଷ୍ଟିର ପ୍ରକାଶ ଦେଖା ଯାଇଛି ଯେଉଁଥିରୁ କି ଫ୍ରଏଡ୍, ଜଂଗ ପ୍ରଭୃତିଙ୍କ ପ୍ରଭାବ ସ୍ପଷ୍ଟ

ନାଟକୀୟ । (ଯଥା : କାଥେଲିନ୍ ରେଇନେ, ଆନେ ରିଡ୍ଲର, ଭେରନନ ୱାଟକିନସ୍, ନର୍ମାନ ନିକୋଲସନ୍ ପ୍ରଭୃତି) । ଏହି ଦଶନ୍ଧିର ସବୁଠାରୁ ବଡ଼ କୌତୂହଳପୂର୍ଣ୍ଣ ବିଷୟ ହେଉଛି, ହଠାତ୍ କବିତାପାଠକଙ୍କ ସଂଖ୍ୟା ବୃଦ୍ଧି, ବିଶେଷତଃ ସାମରିକ ବାହିନୀର ଲୋକ ଓ ସୈନିକମାନଙ୍କ ମଧ୍ୟରେ । ଏହା ତତ୍କାଳୀନ କବିମାନଙ୍କୁ ଗଭୀର ଅନୁପ୍ରେରଣା ଯୋଗାଇବା ସଂଗେ ସଂଗେ କାବ୍ୟିକ ବାୟୁମଣ୍ଡଳକୁ ଉଦ୍‌ବୃଦ୍ଧ କରିଥିଲା । କିଂତୁ ପରବର୍ତ୍ତୀ ଦଶକରେ ଅର୍ଥାତ୍ ୧୯୫୦ ମସିହାରୁ ପୂର୍ବ ଦଶନ୍ଧିର ଲଘୁରସର ଗୀତିକବିତା, ବିଶେଷତଃ ଧର୍ମୀୟ ପୁନର୍ଜାଗରଣ ବିରୁଦ୍ଧରେ ପ୍ରତିକ୍ରିୟା ପ୍ରକାଶ ପାଇଥିବାର ଦେଖାଯାଏ । ନୂତନ କବିମାନଙ୍କର ଚରିତ୍ର ହେଲା, ଭାଷାରେ ଗାଂଭୀର୍ଯ୍ୟ, ପରିଭୌତିକ ଓ ଗ୍ରାମ୍ୟବାଦୀ ବିଷୟବସ୍ତୁ ବର୍ଜନ, ଏବଂ କେତେକ କ୍ଷେତ୍ରରେ ଏକ ଅନୁର୍ବର ସ୍ଥିତାବସ୍ଥା (ଯଥା ଜନ୍ ୱେନ, ଡୋନାଲ୍ଡ ଡେଭି) । ଏହି ସମୟର କବିମାନେ ଡକ୍ଟର ଲେଭିଙ୍କ ସମାଲୋଚନା ଓ କଶାଘାତ ପ୍ରତି ସଜାଗ ଦୃଷ୍ଟି ରଖି କବିତା ରଚନା କରୁଥିଲେ । ସେମାନେ ଥିଲେ ବିଶ୍ଳେଷଣାତ୍ମକ, ମୂଳତଃ ନୀତିଧର୍ମୀ, ଏବଂ ଅତିଷ୍ଟ ଆବେଗିକ ଉଚ୍ଛ୍ୱାସ ତଥା ଭାବପ୍ରବଣତାରୁ ମୁକ୍ତ । ସମସାମୟିକ ସାହିତ୍ୟିକାରଙ୍କ ମଧ୍ୟରେ ସେ ଚାରିଜଣଙ୍କୁ ଇଂରାଜୀ ଚେତନାରେ ବିଶେଷ ସ୍ଥାନର ଅଧିକାରୀ ବୋଲି ମତ ବ୍ୟକ୍ତ କରିଥିଲେ । (୧) ଟି.ଏସ୍.ଏଲିଅଟ, (୨) ଉଇଲିୟାମ ଏମ୍ପସନ୍—ଯାହାଙ୍କର ଆଗ୍ରହ ବିଶେଷରେ ଭାଷାତତ୍ତ୍ୱ ପ୍ରତି, (୩) ରବର୍ଟ ଗ୍ରେଭସ୍ ଯିଏ କି ବର୍ତ୍ତମାନ ଅତିକଥା, ଉପକଥା ଆଦି ନେଇ ଅଧିକ ବ୍ୟସ୍ତ ଓ ଆଗ୍ରହଶୀଳ । (୪) ଏଡୱିନ୍ ମୁର୍ ଯେ କି ସଂପ୍ରତି ଜଣେ ମୌଳିକ କବି ହିସାବରେ ଏବଂ ଜଣେ ଦାର୍ଶନିକ ଏବଂ ପାରଂପାରିକ ବିଷୟବସ୍ତୁର ଦକ୍ଷ କାବ୍ୟକାର ହିସାବରେ ସୁଧୀମଣ୍ଡଳରେ ବିଶେଷ ମର୍ଯ୍ୟାଦା ଲାଭ କରିପାରିଛନ୍ତି ।

## ଧର୍ମୀୟ କବିତା

ପରିଭୌତିକ ଇଂରାଜୀ କବି ଡନ୍‌ଙ୍କ ଉପରେ ଅଧୁନାପ୍ରକାଶିତ ସୁପ୍ରସିଦ୍ଧ ମାର୍କିନ ସମାଲୋଚକ ଆଲେନ୍ ଟାଟେଙ୍କର ଏକ ପ୍ରବନ୍ଧ ଆଲୋଚନା ଭିତରକୁ ଆସିଥିଲା । ଟାଟେ କହିଛନ୍ତି, ଶ୍ରେଷ୍ଠ ଧର୍ମୀୟ କବିତା ଲେଖା ହୋଇଛି ସେତିକ-ବେଳେ ଯେତେବେଳେ କି ରକ୍ଷଣଶୀଳ ଶ୍ରେଣୀ ଆସୁଛନ୍ତି କିଂବା ଯାଉଛନ୍ତି । ସେମାନେ ପ୍ରଭାବ ବା ପ୍ରତିପତ୍ତିର ଶିଖରରେ ବସିଥିବା ବେଳେ ନୁହେଁ । ଏ ପ୍ରସଂଗରେ ଇତାଲୀୟ କବିତା ସଂବନ୍ଧରେ କହିବାକୁ ଯାଇ ଇଟାଲିର ଜଣେ ଖ୍ୟାତନାମା ସାହିତ୍ୟିକ ଶ୍ରୀମତୀ ସ୍ପାକିଆନୀ ଧର୍ମୀୟ କବିତା ବିଷୟରେ କେତେକ ସୂଚନା ଦେଇ-

ଥିଲେ । ସେ କହିଥିଲେ ଯେ ଆଜିକାଲି ଇଟାଲୀରେ ଯେ ଭଲ ଧର୍ମୀୟ କବିତା ଲେଖା ଯାଉ ନାହିଁ ତାହା ଟାଟେଂକ କଥାର ସତ୍ୟତା ପ୍ରମାଣ କରେ । ଜର୍ମାନୀର ସାହିତ୍ୟିକ ମିଃ ଅନ୍‌ସେଲଜ କହିଥିଲେ ଯେ ସାଂପ୍ରତିକ ଜର୍ମାନୀରେ କବିତା ଉପରେ ଧର୍ମର କୌଣସି ପ୍ରଭାବ ନାହିଁ । କର୍ମକୁ ଧର୍ମର ମର୍ଯ୍ୟାଦା ଦେବା ଏକ ଅଧୁନାତମ ପାଶ୍ଚାତ୍ୟ ଧାରଣା ବୋଲି କେତେକ ସାହିତ୍ୟିକ ମତପ୍ରକାଶ କରିଥିଲେ । ଇଜିପ୍ଟର ସାହିତ୍ୟିକ ପ୍ରଫେସର ଅମିନ୍ ଖୁର୍ଲିସ ସେମାନଙ୍କ ଉଦାହରଣ ଦେଇଥିଲେ—ଯାହାଂକ ମତରେ କର୍ମହିଁ ମଣିଷ ଜାତିର ଶ୍ରେଷ୍ଠ ସାଧନା । ଭାରତର ପ୍ରତିନିଧି ସଚ୍ଚିଦାନଂଦ ରାଉତରାୟ ଭଗବଦ୍‌ଗୀତାର କର୍ମଯୋଗର ତାତ୍ପର୍ଯ୍ୟ ବୁଝାଇ କହିଥିଲେ ଯେ ଭାରତୀୟ ଚେତନା କର୍ମକୁ ଧର୍ମ ସହିତ ସମାନ ମର୍ଯ୍ୟାଦାର ସହିତ ଗ୍ରହଣ କରିନେଇଛି । ଭଗବାନ ଶ୍ରୀକୃଷ୍ଣ ଯେ ଜଣେ ଶ୍ରେଷ୍ଠ କର୍ମଯୋଗୀ ଏହା ସେ ପ୍ରତିପାଦନ କରିଥିଲେ ।

## କୃତ୍ରିମ ସମନ୍ୱିତ ଚେତନା :

ସଂପ୍ରତି ଆମେରିକାନ କବିତାରେ ଯେଉଁ କୃତ୍ରିମ ସଂଶ୍ଳେଷଣ ଦ୍ୱାରା ଚେତନାର ସମନ୍ୱୟ (Unification of Sensibility) ଘଟାଇବାର ଦୃଷ୍ଟାଂତ ଆଖିରେ ପଡ଼ୁଚି ତାହା ମୁଁ ଷ୍ଟିଭେନସଂକଙ୍କ 'Fall' କବିତାର ଦୃଷ୍ଟାଂତ ଦେଇ ଦର୍ଶାଇଥିଲି । ତଥାପି ଏହି ଅବସ୍ଥାକୁ ଚେତନାର ସମନ୍ୱୟର ନିକଟତର ଅବସ୍ଥା ବୋଲି ଆମକୁ ମାନିନେବାକୁ ହେବ । କାରଣ ବାସ୍ତବ ଜଗତର ପ୍ରଚଳିତ ସମାଜବ୍ୟବସ୍ଥା ଓ ସମାଜ-ସଂପର୍କର ପୃଷ୍ଠପଟରେ ସଂପୂର୍ଣ୍ଣ ସମନ୍ୱୟ ଆଶା କରିବା ଏକ ବିଡ଼ଂବନା ହେବ ।

ଆଧୁନିକ ଭାରତୀୟ ସାହିତ୍ୟର ଚିତ୍ର ଦେବାକୁ ଯାଇ ମୁଁ ରବୀଂଦ୍ରନାଥଂକଠାରୁ ହିଁ ଆରଂଭ କରିଥିଲି । ମୁଁ ଯାହା କହିଥିଲି ତାର ସାରମର୍ମ ହେଲା : ରବୀନ୍ଦ୍ରନାଥ ବିଂଶ ଓ ତ୍ରିଂଶ ଦଶକର ଇଂରାଜୀ କବିତାକୁ ଗ୍ରହଣ କରି ପାରିନଥିଲେ । ସେ ଏ ସମସ୍ତ କବିତାକୁ ପରଂପରା-ପରିପଂଥୀ ବୋଲି ମନେକରୁଥିଲେ । ତାଂକ ମତରେ ପରଂପରା ମଧ୍ୟରେ ହିଁ ଆନଂଦଲୋକ ଅଂତର୍ନିହିତ । ରବୀଂଦ୍ରନାଥ ଯେ ନୂତନ ଇଂରାଜୀ କବିତା ବିରୋଧରେ ପ୍ରତିକୂଳ ମନୋଭାବ ପୋଷଣ କରିଥିଲେ ତାର କାରଣ ହେଲା ସାହିତ୍ୟରେ ପୁରାତନ ଓ ନୂତନ ମଧ୍ୟରେ ଯେଉଁ ଦ୍ୱଂଦ୍ୱ-ମିଳନର ପ୍ରକ୍ରିୟା ଆବହମାନ କାଳରୁ ଚାଲିଛି ଓ ଚାଲିଥିବ ସେ ସଂବଂଧରେ ସେ ଖୁବ୍ ବେଶୀ ସଚେତନ ନଥିଲେ । ସେ ଭାବୁଥିଲେ ସାହିତ୍ୟ ଏକ ନିର୍ଦ୍ୱାଂଦ୍ୱିକ ପ୍ରକ୍ରିୟା ଯାହା ପ୍ରକୃତରେ ନୁହେଁ । ଜୀବନ ପରି ସାହିତ୍ୟର ବିକାଶ ମଧ୍ୟ ଦ୍ୱଂଦ୍ୱାକୀର୍ଣ୍ଣ ଏବଂ ସେହି ପ୍ରଣାଳୀରେ

ସାହିତ୍ୟରେ ପରଂପରା ଓ ଆଧୁନିକ ମଧ୍ୟରେ ଅନବରତ ବିରୋଧ-ମିଳନ-ସମନ୍ୱୟର ସଂପର୍କ ତିଷ୍ଠି ରହିଛି ଓ ରହିବ । ଏହାପରେ ନକ୍ସାଲ, ନୂତନ କବିଗୋଷ୍ଠୀ, ଏବଂ ବଂଗଳା, ଓଡ଼ିଆ, ହିଂଦୀ, ତେଲେଗୁ, ଓ ଅନ୍ୟାନ୍ୟ ଭାଷାର ପ୍ରମୁଖ କବି ଓ ଗାଳ୍ପିକ ଔପନ୍ୟାସିକ, ନାଟ୍ୟକାରମାନଂକ ସଂବଂଧରେ ଏବଂ ସେମାନଂକ କୃତିର ଏକ ବିବରଣ ଦେବାକୁ ମୁଁ ଚେଷ୍ଟା କରିଥିଲି । ଓଡ଼ିଆ ସାହିତ୍ୟକାର ଫକୀରମୋହନଂକ ଉପନ୍ୟାସର ସଂକ୍ଷିପ୍ତ ପରିଚୟ ମଧ୍ୟ ଦେଇଥିଲି ।

ଆଧୁନିକ ଭାରତୀୟ ସାହିତ୍ୟରେ ଯେ ଚେତନାର ବିଚ୍ଛେଦ କିଂବା ଚେତନା'ର ସମନ୍ୱୟ ଭଳି କିଛି ଘଟି ନାହିଁ, ତା' ନୁହେଁ । ଆଧୁନିକ ଭାରତୀୟ ସାହିତ୍ୟରେ ନଗରୀକରଣ ଏବଂ industrialisationର ପ୍ରଭାବ ଚିଂତାକୋଣ ଓ ଦୃଷ୍ଟି-ଭଂଗୀରେ ପରିବର୍ତ୍ତନ ଆଣିଛି । ଚିଂତା ଓ କାର୍ଯ୍ୟ ମଧ୍ୟରେ ବ୍ୟବଧାନ କ୍ରମେ ବଢ଼ି ବଢ଼ି ଚାଲିଛି । ଫଳରେ କବି ଓ ଲେଖକର ବିଚ୍ଛିନ୍ନତାବୋଧ ଏବଂ ନିଃସଂଗତାର ପୀଡ଼ା କ୍ରମେ ବ୍ୟାପକ ପ୍ରକାଶ ଲାଭ କରୁଛି । ଶ୍ରେଣୀ-ସଂଗ୍ରାମ ଓ ମୂଲ୍ୟବୋଧର ଅସାରତା ମଧ୍ୟ ଭାରତୀୟ ସାହିତ୍ୟରେ ତାର ମୁଦ୍ରାଂକ ରଖିଯିବାକୁ ଛାଡ଼ି ନାହିଁ । ଏହାହିଁ ଥିଲା ମୋର ପ୍ରଥମ ଦିନର ମୋଟାମୋଟି ବକ୍ତବ୍ୟ ।

## ଗଳ୍ପ-ଉପନ୍ୟାସ-ନାଟକରେ ନୈର୍ବ୍ୟକ୍ତୀକରଣ :

ଏହି ଆଲୋଚନା ଚକ୍ରରେ ମିଃ ଉଇଲବର ପ୍ରଥମେ ସୂଚନା ଦେଇଥିଲେ ଯେ ଇଂରାଜୀ ନଭେଲରେ ଯେଉଁ ଶିଥିଳତା ଦେଖା ଦେଇଛି ତାର କାରଣ କଣ ଉଚ୍ଚର-ଚିରଣର ଶ୍ରେଣୀ-ସଂପର୍କ ? ଏହି flaccidityର ଲକ୍ଷଣ ଚିରଣ ଦଶକ ପରେ ହିଁ ବେଶୀ ଦୃଷ୍ଟିରେ ପଡ଼ୁଛି । ସେ ଏଇ ପ୍ରଶ୍ନ ପଚାରିବାର କାରଣ ସଂବଂଧରେ କହି-ଥିଲେ ଯେ ଉପନ୍ୟାସର କେନ୍ଦ୍ରସ୍ଥ ପରଂପରା ମନେ ହେଉଛି ଯେପରି ଅର୍ଥ, ସଂପତ୍ତି ହାସଲ, ଶ୍ରେଣୀ-ସରହଦ ଭାଂଗିବା ବା ତିଷ୍ଠି ରହିବା ସଂଗେ ସଂପୃକ୍ତ ।

ମିଃ ହ୍ୟୁଥ୍-ଷ୍ଟବସ୍ କହିଥିଲେ ଆଇଭି କଂପଟନ-ବର୍ଣେଟ ଦୃଢ଼ ଭାବରେ ଶ୍ରେଣୀ-ଲାଇନ୍‌କୁ ଅସ୍ୱୀକାର କରିଛଂତି ଏବଂ ତାଂକ ଉପନ୍ୟାସରେ ସେ ପୋଷାକ ପରିଚ୍ଛଦ, କିଂବା ଯାତାୟତର ଯାନ ବାହନ (mode of travel) ପ୍ରଭୃତିର ବର୍ଣ୍ଣନା ମଧ୍ୟ ପରିହାର କରିଛଂତି । ତାଂକ ଉପନ୍ୟାସରେ ନୈର୍ବ୍ୟକ୍ତି-କରଣ (ବା depersonalization) ର ପ୍ରଚେଷ୍ଟା ଲକ୍ଷଣୀୟ । ସେ ଶ୍ରେଣୀଗତ ତାରତମ୍ୟ ସଂପୂର୍ଣ୍ଣ ରୂପେ ଉଠାଇ ଦେବାକୁ ଚେଷ୍ଟା କରିଛଂତି । ଜର୍ମାନୀର ପ୍ରତିନିଧି ମିଃ ଅନ୍‌ସେଲଡ଼୍ ଆପତ୍ତି ଉଠାଇଥିଲେ ଯେ ଏଭଳି ଏକ

ସାଧାରଣୀକରଣ ସଂଭବ ନୁହେଁ । ସେ କହୁଥିଲେ ଯେ ପ୍ରତ୍ୟେକ ଔପନ୍ୟାସିକ ନିଜର ଭିତ୍ତିଭୂମି ଅନ୍ୱେଷଣ କରେ ଯାହା ତାକୁ ବର୍ଣ୍ଣନାତ୍ମକ ଅଭିବ୍ୟକ୍ତିର ଅନୁକୂଳ ମାର୍ଗ ଦର୍ଶନ ଦେବ । ତାଂକ ମତରେ ଉନବିଂଶ ଶତାବ୍ଦୀର ଉପନ୍ୟାସ ମଧ୍ୟରେ ଏକ ସାଧାରଣ ସାମ୍ୟ-ଭିତ୍ତି ଥିଲା—ତାହା ହେଉଛି ବ୍ୟକ୍ତିର ସଂପୂର୍ଣ୍ଣତା । ତାହା ବର୍ତ୍ତମାନ ନାହିଁ । ଆଜିର ଉପନ୍ୟାସ ଅବସର ସହିତ ସଂପୃକ୍ତ । ଡିକେନ୍‌ସଂକ ଉପନ୍ୟାସରେ ଲକ୍ଷ୍ୟ ଥିଲା ବିଦ୍ରୋହ ବା ଉପଦ୍ରବ ମଧ୍ୟରୁ ମଧ୍ୟବିତ୍ତ ନିରାପତ୍ତା ଭିତରକୁ ଚାଲି ଆସିବା

ଇଂଲଂଡରେ "Ulyses" ପରେ କୌଣସି ଉଲ୍ଲେଖଯୋଗ୍ୟ ଉପନ୍ୟାସ ଲେଖା ଯାଇନାହିଁ ବୋଲି ଅନେକେ ସ୍ୱୀକାର କରିଥିଲେ । ଅନସେଲଡ କହୁଥିଲେ, ଭର୍ଜିନିଆ ଉଲଫ୍ ଏବଂ କେତେକାଂଶରେ ହେନେରୀ ଗ୍ରିନ୍ କେତେକ ଉପନ୍ୟାସ-ଅଙ୍ଗିକ (novel-form) ସୃଷ୍ଟି କରିଛନ୍ତି ଯାହା ଦେଶର ଏକ ବୃହଦାଂଶର ସାର୍ଥକ ବିଶ୍ଳେଷଣ କରିବାରେ ସଫଳ ହୋଇଛି । ମାତ୍ର ହ୍ୱିଥ୍-ଷ୍ଟବସ କହୁଥିଲେ ଯେ ସେମାନଂକର ଉପନ୍ୟାସର ଫର୍ମ ଉପନ୍ୟାସ ଅପେକ୍ଷା କବିତା ଓ ଉପନ୍ୟାସର ଏକ ଅପମିଶ୍ରଣ । ଯୁଲସିସ୍ ଆଂତରିକତାର ସହିତ ପଢ଼ିବା ପରେ ଆଉ କିଏ ପାରଂପରିକ ଶୈଳୀରେ ଉପନ୍ୟାସ ରଚନା କରି ପାରିବ କି ? ବହୁ ଦଶଂଧି ପର୍ଯ୍ୟଂତ ଜଏସଂକ ଲେଖା ଉପନ୍ୟାସକୁ ହତ୍ୟା କରିଛି ବୋଲି ସେ କହୁଥିଲେ । ଫ୍ରାନସରେ ଏହାର ବିକଳ୍ପ ଅବସ୍ଥା ସୃଷ୍ଟି ହୋଇଥିଲା ବୋଲି ମିଃ ଡ଼ମୁର ଉଲ୍ଲେଖ କରିଥିଲେ । ପ୍ରାଉଷ୍ଟ ଓ ଜୁଲେସ ରୋମେଂକ ଭଳି ମହାନ ଦ୍ରଷ୍ଟା ଉନବିଂଶ ଶତାବ୍ଦୀ ପରଂପରାରେ ଉପନ୍ୟାସ ରଚନା କରିବାକୁ ଯାଇ ବିଫଳ ହୋଇଥିଲେ । ଏହା ଅପେକ୍ଷା ବରଂ ଆମେରିକାନ ଔପନ୍ୟାସିକମାନେ କିଛି ସ୍ୱତଂତ୍ର ଫର୍ମ ପାଇଛଂତି ଯାହା ଫଳରେ କି ସେମାନେ ୧୯ଶ ଶତାବ୍ଦୀ ଧାରାରୁ ନିଜକୁ ସ୍ୱତଂତ୍ର କରିପାରିଛଂତି । ଉପନ୍ୟାସର ସମସ୍ୟା ଏକ focus ରୂପେ ବିଭିନ୍ନ ସୃଷ୍ଟି କରିପାରେ । ଦାର୍ଶନିକ ସମସ୍ୟା, ପରାଭୌତିକ ବା ପୌରାଣିକ ସମସ୍ୟା ଏବଂ ନିଂଦ୍ନେଚିତନ୍ତ୍ରର ସମସ୍ୟାର ଭିନ୍ନ ଭିନ୍ନ ଉପସ୍ଥାପନା ଓ ବର୍ଣ୍ଣନା ସଂଭବ ।

ଉପନ୍ୟାସର ଜନ୍ମ-ଜାତକ ଓ ବିକାଶଧାରା ପ୍ରଧାନତ ମଧ୍ୟବିତ୍ତ ଶ୍ରେଣୀ ଭିତରୁ ହିଁ ହୋଇଥିଲା । ବର୍ତ୍ତମାନ ମଧ୍ୟବିତ୍ତ ଏକପ୍ରକାର ଧ୍ୱଂସର ସମ୍ମୁଖୀନ । ତେଣୁ ଉପନ୍ୟାସ ମଧ୍ୟ ସେହିପରି ଏକ ଅନିବାର୍ଯ୍ୟ ଧ୍ୱଂସର ମୁହାମୁହିଁ ଛିଡ଼ା ହୋଇଛି ବୋଲି କେହି କେହି କହୁଥିଲେ ।

ଅନେକଂକ ମତରେ ଭବିଷ୍ୟତ ଉପନ୍ୟାସ ଦାର୍ଶନିକ ହୋଇପାରେ । କେହି କେହି ଏହା ସାଂବାଦିକ ବା Journalistic ହେବାର ସଂଭାବନା କଥା ଉଠାଇଥିଲେ ।

ଦର୍ଶନ ଜଗତ ପ୍ରୟୋଗାତ୍ମକ ବା ଟେକ୍ନିକାଲ ହେଉଛି । ତେଣୁ ଉପନ୍ୟାସ ବା ନାଟକ ପକ୍ଷରେ ପ୍ରମୁକ୍ତ ବିଦ୍ୟାର ଭାର ବହନ କରିବା ନିଶ୍ଚୟ କଠିନ ହେବ ।

କ୍ଷୁଦ୍ର ଗଳ୍ପ ସଂପର୍କୀୟ ଆଲୋଚନାରୁ ଏହାହିଁ ପ୍ରତୀୟମାନ ହେଲା ଯେ କ୍ଷୁଦ୍ର ଗଳ୍ପର ଭବିଷ୍ୟତ ସବୁ ଦେଶରେ ଅଂଧକାରାଚ୍ଛନ୍ନ । ଇଂଲଂଡର ପ୍ରତିନିଧି ମିଃ ବେଏନସ୍ ପ୍ରକାଶ କରିଥିଲେ ଯେ ତାଂକ ଦେଶରେ କ୍ଷୁଦ୍ର ଗଳ୍ପର ଏକ ସଂକଳନ ପ୍ରକାଶ କରିବା ବାସ୍ତବିକ ଦୁରୂହ । ମିଃ ଅନସେଲାଜ ସ୍ୱୀକାର କରିଥିଲେ ଯେ ତାଂକ ଦେଶରେ (ଜର୍ମାନୀରେ) ମଧ୍ୟ ଠିକ୍ ସେଇ ଅବସ୍ଥା । କେତେକ ସାହିତ୍ୟିକ କହୁଥିଲେ ଯେ ଏକ ଭଲ କ୍ଷୁଦ୍ରଗଳ୍ପ ପଢ଼ି ତାର ମର୍ମ ଉପଲବ୍ଧି କରିବା ପାଇଁ ଯେଉଁ ମନୋଯୋଗ ଓ ମାନସିକ କେନ୍ଦ୍ରୀକରଣ ଦରକାର ତାହା ସାଧାରଣ ପାଠକଂକଠାରେ ଅଭାବ । ସେମାନେ ବରଂ ହାଲକା ଧରଣର ଭ୍ରମଣ କାହାଣୀ, ଅଧିକ ପସଂଦ କରଂତି ।

ମୁଁ ୧୯୬୨ ମସିହାରେ ଆମେରିକାର ଷ୍ଟେଟ୍ ମିସନ ଇଂଟରନ୍ୟାସନାଲଂକ ଆମଂତ୍ରଣକ୍ରମେ ଦ୍ୱିତୀୟବାର ଆମେରିକା ଯାଇଥିବା ବେଳେ ସେନଙ୍କ ପାଇଁ ହାର୍ଭାର୍ଡ଼ ଯାଇଥିଲି । ଡଃ କିସିଂଜର ସେତେବେଳକୁ ହାର୍ଭାର୍ଡ଼ରୁ ବିଦାୟ ନେଇ ଯୁକ୍ତରାଷ୍ଟ୍ର ଆମେରିକା ରାଷ୍ଟ୍ରପତିଂକର ପରରାଷ୍ଟ୍ର ବିଭାଗର ସହକାରୀ ସେକ୍ରେଟାରୀ ରୂପେ କାର୍ଯ୍ୟ କରୁଥାଂତି । ତାଂକ ସଂଗେ ସେଥର ମୋର ଆଉ ଦେଖା ହେଲା ନାହିଁ । ଗତବର୍ଷ (୧୯୮୨) ଗ୍ରୀଷ୍ମଋତୁରେ ଲଂଡନରେ ତାଂକ ସଂଗେ ବହୁ ବର୍ଷ ପରେ ସାକ୍ଷାତ୍ ହୋଇଥିଲା—ଟେଲିଭିଜନ୍‌ରେ । ସେ ନିଜର ଆତ୍ମଜୀବନୀ ପ୍ରକାଶ କରିବା ପାଇଁ ଲଂଡନ ଆସିଥିଲେ ।

ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟ ଆଂତର୍ଜାତିକ କଳା-ବିଜ୍ଞାନ ସେମିନାର ବହୁଦିଗରୁ ଐତିହାସିକ ଗୁରୁତ୍ୱପୂର୍ଣ୍ଣ । କଳା ଓ ସାହିତ୍ୟର ଏକ ଆଂତର୍ଜାତିକ ବିଚାର ମଂଚରୂପେ ଏହାର ସ୍ଥାନ ସମଗ୍ର ପୃଥିବୀରେ ଅବିସଂବାଦୀ ଥିଲା ଏଥିରେ କୌଣସି ସଂଦେହ ନାହିଁ ।

୧୪ । ୧୦ । ୧୯୮୩ □ □ □

କଟକ—୧

# ଆଧୁନିକ ସାହିତ୍ୟିକ ଦୃଶ୍ୟପଟ

[ ଆଧୁନିକ ସାହିତ୍ୟରେ ସାମାଜିକ ପୃଷ୍ଠପଟ କଣ ? କେବଳ କଳା ଓ ସାହିତ୍ୟର ତାତ୍ତ୍ୱିକ ଆଲୋଚନା ଯଥେଷ୍ଟ ନୁହେଁ । ତାହା ଦିଗ୍‌ଦର୍ଶନ ଦେଇପାରେ, ମାତ୍ର ସୃଜନ କର୍ମର ବିକାଶ ସାଧନରେ ପ୍ରତ୍ୟକ୍ଷ ସାହାଯ୍ୟ କରିପାରେ ନାହିଁ । ଯାହା ଶିଳ୍ପୀ ବା ସାହିତ୍ୟିକକୁ ବଂଚିବାରେ ସାହାଯ୍ୟ ନକରେ ତାର ଯେତେ ତାତ୍ତ୍ୱିକ ମୂଲ୍ୟ ଥାଉ ନା କାହିଁକି ତାହାର ଆଶୁ ପ୍ରୟୋଜନୀୟତା ସଂବନ୍ଧରେ ପ୍ରଶ୍ନ ଉଠିପାରେ । ]

କେବଳ କଳା ଓ ସାହିତ୍ୟର ତାତ୍ତ୍ୱିକ ଆଲୋଚନା ଯଥେଷ୍ଟ ନୁହେଁ । ତାହା ଦିଗ୍‌ଦର୍ଶନ ଦେଇପାରେ, ମାତ୍ର ସୃଜନକର୍ମର ବିକାଶସାଧନରେ ପ୍ରତ୍ୟକ୍ଷ ସାହାଯ୍ୟ କରିପାରେ ନାହିଁ । ଯାହା ଶିଳ୍ପୀ ବା ସାହିତ୍ୟିକକୁ ବଂଚିବାରେ ସାହାଯ୍ୟ ନକରେ ତାହାର ଯେତେ ତାତ୍ତ୍ୱିକ ମୂଲ୍ୟ ଥାଉ ନା କାହିଁକି ତାହାର ଆଶୁ ପ୍ରୟୋଜନୀୟତା ସଂବନ୍ଧରେ ପ୍ରଶ୍ନ ଉଠିପାରେ ।

୧୯୬୮ ମସିହାରେ କଲିକତାଠାରେ ପ୍ରଥମ ଥର ପାଇଁ ଅନୁଷ୍ଠିତ, ନିଖିଳ ଭାରତ କବି ସମ୍ମିଳନୀର ଖୋଲା ଅଧିବେଶନର ସଭାପତିରୂପେ ମୁଁ ଯେଉଁ ଭାଷଣ ଦେଇଥିଲି ସେଥିରେ ଏ ବିଷୟଟିକୁ ରେଖାଂକିତ କରିଥିଲି । ମୁଁ କହିଥିଲି :

**"In India, literature is a good walking stick, but a bad crutch."**

(ଅର୍ଥାତ୍ ଭାରତବର୍ଷରେ ସାହିତ୍ୟ ଏକ ଭଲ ଭ୍ରମଣ-ଯଷ୍ଟି ହୋଇପାରେ, ମାତ୍ର ଆଶାବାଡ଼ି ରୂପେ ତା ଉପରେ ନିର୍ଭର କଲେ ବା ଜୀବନଧାରଣରେ ଉପାୟରୂପେ ତାକୁ ଅବଲଂବନ କଲେ ତାହା ସହଜରେ ଭାଂଗି ପଡ଼େ ) ଇଆ ଭିତରେ ଦୀର୍ଘ ୧୫ ବର୍ଷ ବିତିଗଲାଣି । ମାତ୍ର ଅବସ୍ଥା ଯେଉଁପରି ଥିଲା ସେଇପରି ଅଛି, ବରଂ ଅଧିକ ଖରାପ ହୋଇଛି ବୋଲି କୁହାଯାଇପାରେ । ଆଜି ଜଣେ ଲେଖକ ବା କବି ଯାହା ତାର ବହିରୁ ଆୟକରେ ତାହା ଅତି ସାମାନ୍ୟ—ସେଥିରେ ତାର ବର୍ଷକରୁ ମାସକର ଖର୍ଚ୍ଚ ଉଠିବ କି ନାହିଁ ସନ୍ଦେହ । ଏଥିରେ ଆମ ଦେଶରେ ସାହିତ୍ୟର ସୁସ୍ଥ ବିକାଶ ସଂଭବ ହେବ କିପରି ? ଆମ ଦେଶର ଅଧିକାଂଶ ସାହିତ୍ୟିକ ଅନ୍ୟ ସୂତ୍ରରୁ ଜୀବନ ଧାରଣରେ ସଂବଳ ସଂଗ୍ରହ କରିଥାଂତି । କିଏ ଶିକ୍ଷକ, କିଏ ସରକାରୀ କର୍ମଗୃସ୍ଥ କିଏ ବା ରାଜନୀତିକର ଜୀବନ ଯାପନ କରିଥାଂତି । ସାହିତ୍ୟକୁ କେବଳ ଏକ ଅବସର ବିନୋଦନର ସାମଗ୍ରୀ ରୂପେ ବା ସୌଖୀନ ଉପଜୀବିକା ରୂପେ ଗ୍ରହଣ କରିଥାଂତି ।

ଫଳରେ ସାହିତ୍ୟ ପାଇଁ କୌଣସି ଆନ୍ତରିକତା ବା ଉତ୍ସର୍ଗୀକୃତ ନିଷ୍ଠା ସେମାନଙ୍କ ନିକଟରୁ ଆଶା କରିବା ବୃଥା । ଦ୍ୱିତୀୟରେ ଜନଜୀବନ ସହିତ ସେମାନଙ୍କର ପ୍ରତ୍ୟକ୍ଷ ସମ୍ପର୍କ ନଥିବାରୁ ସେମାନେ ଯାହା ଲେଖନ୍ତି ତାହା ଜନଜୀବନର ମହାସ୍ରୋତରୁ ଶୋଚନୀୟ ଭାବରେ ବିଚ୍ଛିନ୍ନ । ସେଥିରେ ଜନତାର ଆଶା, ଆକାଂକ୍ଷା, ସ୍ୱପ୍ନ, ସଂଗ୍ରାମ ବା ନୈରାଶ୍ୟ ଖୁବ୍ କମ୍ ପ୍ରତିଫଳିତ ହୋଇଥାଏ—ତାହା ପୁଣି ଜଣେ ଉପରିଷ୍ଠ ବ୍ୟକ୍ତିର ଦୃଷ୍ଟିକୋଣରୁ । ଗଭୀର ସହାନୁଭୂତି ବା ଐକାତ୍ମ୍ୟ ବଦଳରେ ଦୟା ବା ଅନୁକଂପା ଏବଂ କେଉଁଠି କେଉଁଠି ଟିକିଏ ଉପରଠାଉରିଆ ସଦିଚ୍ଛା ବା ସୌହାର୍ଦ୍ଦ୍ୟର ସଂକେତ ଛଡ଼ା କୌଣସି ଗଭୀରତର ଯୋଗସୂତ୍ର ବା ଏକାତ୍ମ୍ୟବୋଧର ପରିଚୟ ପ୍ରାୟ ମିଳେ ନାହିଁ । ଏହି ଶୋଚନୀୟ ଭାବାତ୍ମକ ବ୍ୟବଧାନ କେବଳ ସେତିକିବେଳେ ଦୂର ହୋଇପାରିବ ଯେତେବେଳେ ସାହିତ୍ୟିକ ଜନତାର ଜୀବନ-ସଂଗ୍ରାମରେ ପ୍ରତ୍ୟକ୍ଷ ଭାଗ ନେବ ଏବଂ ସେମାନଙ୍କର ମୌଳିକ ସମସ୍ୟା ସହିତ ଏକୀଭୂତ ହୋଇ ପଡ଼ିବ । ମାତ୍ର ସାହିତ୍ୟ ଉପରେ ନିର୍ଭର କରି ଜୀବନ ଧାରଣ କରିବା ଆମ ଦେଶରେ ଏ ପର୍ଯ୍ୟନ୍ତ ସମ୍ଭବ ହୋଇ ନଥିବାରୁ ଲେଖକ ଅନ୍ୟ ବୃତ୍ତି ଅବ-ଲମ୍ବନ କରିବାକୁ ବାଧ୍ୟ ହେଉଛି ଏବଂ ତା ଫଳରେ ଜନସାଧାରଣଙ୍କଠାରୁ ପ୍ରତ୍ୟକ୍ଷ ସଂପର୍କ ହରାଇ କେବଳ ଏପାଖ ସେପାଖ ହେଉଛି । ତାର ମନ ଯାହା ଚାହୁଁଛି ବାସ୍ତବତା ତାହା କରାଇ ଦେଉ ନାହିଁ । ଫଳରେ ସେ ହେଉଛି ଦ୍ୱିଧାବିଭକ୍ତ, ଏକ ବିଡ଼ଂବିତ ଏବଂ ଖଂଡିତ ବ୍ୟକ୍ତିତ୍ୱ । ଚିନ୍ତା ଓ କର୍ମ ମଧ୍ୟରେ ଏକ ଅସମର୍ଥନୀୟ ବ୍ୟବଧାନ ଯୋଗୁ ଅଧିକାଂଶ ଶିଳ୍ପୀ ଓ ସାହିତ୍ୟିକ ଚେତନାର ବିଚ୍ଛେଦ ଭୋଗୁଛନ୍ତି —ଯେହେତୁ ସେମାନଙ୍କ ସାହିତ୍ୟକର୍ମ ପଛରେ କୌଣସି ସାମାଜିକ ଉପଲବ୍ଧି ନାହିଁ ବା ସମାଜ ସହିତ ଅଂଗାଗୀ ସଂବନ୍ଧ ନାହିଁ । ସେମାନେ ଏକାତ୍ମ ହେବେ କାହା ସଂଗରେ ? *

ଏପରି ଅସହାୟ ଅବସ୍ଥାରୁ କବି ଓ ଲେଖକଙ୍କୁ ଉଦ୍ଧାର କରିବ କିଏ ? ସୃଜନଶୀଳ ଜାତୀୟ ପ୍ରତିଭାର ସୁରକ୍ଷା ନିଶ୍ଚିତ ଭାବରେ ଏକ ରାଷ୍ଟ୍ରୀୟ ଦାୟିତ୍ୱ । ଶୋଷଣଜୀବୀ ପୁଂଜିବାଦୀ ସମାଜର ଆପ୍ତବାକ୍ୟ ଥିଲା—'*Necessity is the mother of invention*' । ଅର୍ଥାତ୍ ଅଭାବ ଅନାଟନ ହିଁ ମଣିଷର ସୃଜନ-ଶକ୍ତିକୁ ଜନ୍ମଦିଏ । ଏହା ହେଉଛି ପୁଂଜିବାଦୀ ସମାଜର ତତ୍ତ୍ୱବାଣୀ । କିନ୍ତୁ ଆଧୁନିକ ସମାଜର ତତ୍ତ୍ୱ ବାଣୀ ହେଉଛି : "*Security is the mother of invention.*" (ଅର୍ଥାତ୍ ସାମାଜିକ ନିରାପତ୍ତା ହିଁ ଉଦ୍ଭାବନୀ ଶକ୍ତିର ଜନ୍ମଦାତ୍ରୀ, ଅଭାବ, ଅନାଟନ ନୁହେଁ ।

---

* **Presidential Address by Sri Sachi Rautrai at the Ist Session of All India Poets Conference, Calcutta, 1968.** ଦ୍ରଷ୍ଟବ୍ୟ ।

ଆମ ଓଡ଼ିଶାରେ ବହୁ ପ୍ରତିଷ୍ଠିତ ଲେଖକ, ଶିଳ୍ପୀ, ଗବେଷକ ଅଭାବ, ଅବହେଳା ଓ ଅନାଟନ ମଧ୍ୟରେ ସଡ଼ି ଅକାଳମୃତ୍ୟୁ ବରଣ କରିଛନ୍ତି । ଶିଳ୍ପୀ ଓ ସାହିତ୍ୟିକଙ୍କୁ ଏଭଳି ଦୟନୀୟ ପରିସ୍ଥିତିରୁ ଉଦ୍ଧାର କରି ତାର ସାମାଜିକ ନିରାପତ୍ତାର ବ୍ୟବସ୍ଥା କରିବା ସମାଜ ଓ ରାଷ୍ଟ୍ରର ଅଶୁ କର୍ତ୍ତବ୍ୟ ନୁହେଁ କି ?

ଅନେକ ପାରଂପରୀଣ—ରୀତିରେ ଲେଖୁଥିବା ପ୍ରତିଷ୍ଠିତ କବି ଓ ଲେଖକ କହିଥାନ୍ତି ଯେ ଆଧୁନିକ କବିତା, ଗଳ୍ପ, ଉପନ୍ୟାସ, ନାଟକ ସାଧାରଣ ପାଠକ ପକ୍ଷରେ ଦୁର୍ବୋଧ । ସେଥିପାଇଁ ସେମାନେ ତାହା କିଣନ୍ତି ନାହିଁ କି ପଢ଼ନ୍ତି ନାହିଁ । ମାତ୍ର ମୁଁ ପଚାରେ ସେମାନେ ତ ପାରଂପରୀଣ ରୀତିରେ କାବ୍ୟ କବିତା ରଚନା କରୁଛନ୍ତି ସେମାନଙ୍କ ବହିର କାଟତି କେତେ ? ସେମାନେ ଯଦି ସ୍ୱଚ୍ଛଳ ଅବସ୍ଥାରେ ରହନ୍ତେ ତାହାହେଲେ ମଧ୍ୟ ତାହା ସମସ୍ତ ଲେଖକଙ୍କ ପକ୍ଷରେ ଆନନ୍ଦର କଥା ହୁଅନ୍ତା ।

ସାହିତ୍ୟର ପ୍ରସାର ମୁଖ୍ୟତ ପାଠକସମାଜ ଉପରେ ନିର୍ଭର କରେ । ଜଣେ କବି ବା ଲେଖକ ଯାହା ସମାଜଠାରୁ ଗ୍ରହଣ କରେ ଯେ ସେହି ଅନୁଭୂତି ଓ ଉପଲବ୍ଧିକୁ ପ୍ରାଣ ରସରେ ଜାରିତ କରି ସମାଜକୁହିଁ ଫେରାଇ ଦିଏ;—ଠିକ୍ ସୂର୍ଯ୍ୟ ଯେପରି ପୃଥିବୀରୁ ଜଳ ନିଃଶୋଷଣ କରି ତାକୁ ବର୍ଷାରେ ପରିଣତ କରି ସେଇ ପୃଥିବୀକୁ ହିଁ ଫେରାଇ ଦିଅନ୍ତି । ତେଣୁ କବି ଲେଖକ ବା ଶିଳ୍ପୀର ସମାଜଠାରୁ କଣ କିଛି ପ୍ରାପ୍ୟ ନାହିଁ ?

ଆମ ଓଡ଼ିଶାରେ ସାଧାରଣ ଲୋକଙ୍କ ମଧ୍ୟରେ ସାହିତ୍ୟ-ସ୍ପୃହା ଏତେ କମ ଯେ ଅନ୍ୟ ପ୍ରଦେଶ ସହିତ ତୁଳନା କଲେ ଆମକୁ ଲଜ୍ଜାରେ ନତମସ୍ତକ ହେବାକୁ ହୁଏ । କେରଳ, ଆନ୍ଧ୍ର ବା ଅନ୍ୟ ପ୍ରଦେଶରେ ଏଭଳି କୌଣସି ଶିକ୍ଷିତ ବ୍ୟକ୍ତି ନାହିଁ ଯେ କି ନିଜ ମାତୃଭାଷାରେ ପ୍ରକାଶିତ ପତ୍ର-ପତ୍ରିକା କିଂବା କବିତା, ଗଳ୍ପ, ଉପନ୍ୟାସ ନିୟମିତ କିଣି ପଢ଼େ ନାହିଁ । ଆମ ଓଡ଼ିଶାରେ ତହିଁର ଶୋଚନୀୟ ବ୍ୟତିକ୍ରମ ଆମ ଜାତୀୟ ଚରିତ୍ର ପକ୍ଷରେ ଆଦୌ ପ୍ରଶଂସାର କଥା ନୁହେଁ । ଏକଥା ସାଧାରଣ ପାଠକେ ବୁଝିବେ କି ?

ସାହିତ୍ୟିକ ଚିର ଆଶାବାଦୀ । ସେ ନିଜ ଅଦୃଷ୍ଟକୁ ପରିବର୍ତ୍ତିତ କରିପାରେ ସମାଜର ପରିବର୍ତ୍ତନ ଘଟାଇ । ପ୍ରତି ଦେଶରେ, ପ୍ରତି ଯୁଗରେ କବି ଓ ଲେଖକମାନେ ହିଁ ନୂତନ ସମାଜ ଗଠନ କରିବାରେ ଅଗ୍ରଦୂତରୂପେ କାର୍ଯ୍ୟ କରିଛନ୍ତି । ନୂତନ ରାଷ୍ଟ୍ରର ନକ୍‌ସା ଆସିଚି ସାହିତ୍ୟିକର ଲେଖନୀରୁ—ଯାହାକୁ ଜନସମାଜ ସଂଗ୍ରାମୀ

ସାଧନା ଦ୍ୱାରା କାର୍ଯ୍ୟରେ ରୂପାନ୍ତରିତ କରିଛନ୍ତି । ଇତିହାସର ଏ ନିୟମ ନିଶ୍ଚୟ ଆମ ଦେଶରେ ମଧ୍ୟ କାର୍ଯ୍ୟକାରୀ ହେବ ।

ଆମ ସାହିତ୍ୟରେ ଅଭି ଗୋଟିଏ ବିଷୟ ପ୍ରତି ସାବଧାନ ହେବାକୁ ହେବ । ଆଧୁନିକ ସାହିତ୍ୟକୁ ଜାତୀୟ ଚେତନାର ମହାସ୍ରୋତରୁ ବିଚ୍ଛିନ୍ନ କରି ସଂପୂର୍ଣ୍ଣ ବ୍ୟକ୍ତି-ସର୍ବସ୍ୱ କରିବାର ଏକ ଚେଷ୍ଟା ମଧ୍ୟ ଚାଲିଥିବାର ଦେଖା ଯାଉଛି —ଯେଉଁ ବ୍ୟକ୍ତି କି ସମାଜଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ ଏବଂ ସାଂପ୍ରତିକ ସମାଜ-ମାନସର ଦୂରତମ ପ୍ରତିନିଧି ନୁହେଁ । ସାହିତ୍ୟକୁ ତାର ଐତିହାସିକ ପଥରୁ ଭ୍ରଷ୍ଟ କରି ଅପସାହିତ୍ୟରେ ପରିଣତ କରିବା ପାଇଁ ଏ ଯେଉଁ ଚେଷ୍ଟା ଚାଲିଛି ତାହା ନିଶ୍ଚୟ ବ୍ୟର୍ଥ ହେବ ଏଥିରେ ସଂଦେହ ନାହିଁ । ସାହିତ୍ୟହିଁ ନୂତନ ଚେତନାର ଅଗ୍ରଦୂତ । ତାର ଏଇ ଭୂମି ଓ ଭୂମିକାରୁ ତାକୁ କେହି ବିଚ୍ୟୁତ କରିପାରିବେ ନାହିଁ । ଏତିକ ବିଶ୍ୱାସ ନଥିଲେ କୌଣସି ବ୍ୟକ୍ତି ସାହିତ୍ୟିକ ହୋଇ ନପାରେ ।

ଥରେ ଲେନିନ୍ କହିଥିଲେ ପୁଂଜିବାଦୀ ଦେଶରେ ପ୍ରତିଭାଶାଳୀ ସୃଜନକ୍ଷମ ବ୍ୟକ୍ତିମାନଂକୁ ସେମାନଂକ ଜୀବଦ୍ଦଶାରେ ପ୍ରବଳ ବାଧାବିପତ୍ତିର ସମ୍ମୁଖୀନ ହେବାକୁ ପଡ଼ିଥାଏ । ତାଂକ କଂଠରୋଧ କରିବା ପାଇଁ ସବୁ ମହଲରୁ ପରୋକ୍ଷ ଓ ପ୍ରତ୍ୟକ୍ଷ ଅଂତରାୟ ସୃଷ୍ଟି କରାଯାଇଥାଏ । ମାତ୍ର ମୃତ୍ୟୁପରେ ସେମାନଂକୁ ଦେବତାର ଆସନରେ ବସାଇ ଦିଆଯାଏ—ସେମାନଂକ ମୁଖମଂଡଳ ଚାରିପଟେ ଏକ ଜ୍ୟୋତିର୍ମଂଡଳ ସୃଷ୍ଟି କରାଯାଇଥାଏ, ଯେପରିକି ତାଂକୁ କେହି ସାଧାରଣ ମଣିଷ ବୋଲି ଚିହ୍ନି ପାରିବେ ନାହିଁ । ଆମ ଦେଶରେ ଏହାର ଭୂରିଭୂରି ଦୃଷ୍ଟାଂତ ଦେଖିବାକୁ ମିଳେ । ମଲାପରେ ସ୍ମରଣିକା ବା ଜୀବନୀ ଗ୍ରଂଥ ପ୍ରକାଶ, ପ୍ରତିକୃତି ଉନ୍ମୋଚନ, ଶୋକସଭା, ସ୍ମୃତିସ୍ତଂଭ ନିର୍ମାଣ ତ ଦୈନଂଦିନ ଘଟଣାରେ ପରିଣତ ହେଲଣି । ଏତେ ଶୋକ, ଏତେ ଉଚ୍ଛ୍ୱାସ ସେ ବଂଚଥିବା ବେଳେ ଥାଏ କେଉଁଠି ? ଏ ସବୁର ଅର୍ଥ କଣ ? ଏହା ଯଦି ଜୀବିତ ମଣିଷର କର୍ମଶକ୍ତିକୁ ଉଦ୍‌ବୋଧିତ ବା ଉଦ୍‌ଜୀବିତ ନ କରେ, ତାର କର୍ମପଥରେ ସାହସ ବା ଶକ୍ତି ସଂଚାର ନକରେ ତେବେ ଏ ସବୁ ବହୁମୂଲ୍ୟ ସ୍ମୃତିଚାରଣର କିଛି ସାର୍ଥକତା ଅଛି କି ? ଏ ପ୍ରଶ୍ନ ପ୍ରତ୍ୟେକ ବ୍ୟକ୍ତି ନିଜକୁ ପଚାରିବା ଦରକାର ।

ଜଣେ ସତ୍ସାହିତ୍ୟିକ ବା ଶିଳ୍ପୀର ପ୍ରଚଳିତ ସମାଜ-ବ୍ୟବସ୍ଥା ସହିତ ସଂପର୍କଟା ମଧୁର ନୁହେଁ । ସ୍ଥିତାବସ୍ଥାର ଜଗୁଆଳି ରକ୍ଷଣଶୀଳ ସହିତ ତାର ସଂଘର୍ଷ ଅନିବାର୍ଯ୍ୟ । ଏହା କୌଣସି ରାଜନୀତିକ କାରଣ ଯୋଗୁ ନୁହେଁ, ତାର ସାହିତ୍ୟିକ ଧର୍ମହିଁ ତାକୁ ଏହା କରାଇଥାଏ । ତାର ସଜାଗତାହିଁ ତାକୁ ପ୍ରଚଳିତ ବ୍ୟବସ୍ଥାର ପ୍ରତିକୂଳ ସ୍ରୋତକୁ ଠେଲି ଦେଇଥାଏ—କୌଣସି ରାଜନୀତିକ ବା ଧର୍ମୀୟ ପ୍ରବଣତା

କିଂବା ଅନ୍ୟ କିଛି ନୁହେଁ । ପ୍ରଚଳିତ ରୀତି, ନୀତି, ଧ୍ୟାନ ଧାରଣା, ଆଇନ କାନୁନ, ମୂଲ୍ୟବୋଧ ଓ ତତ୍ତ୍ୱ ସବୁ କେବଳ ସ୍ଥିତାବସ୍ଥାକୁ ଜିଆଇ ରଖିବାପାଇଁ ହିଁ ଜନ୍ମ ଓ ଉଦ୍ଦିଷ୍ଟ । ଏହି ସ୍ଥିତାବସ୍ଥା ଶୋଷଣନୀତି ଓ ସୁବିଧାବାଦ ଉପରେହିଁ ବଂଚି ରହିଛି । ଆମ ଦେଶରେ ଉଦାରଚେତନା କହିଲେ କେବଳ ସୁବିଧାବାଦ ଓ ଅଟୋରଧର୍ମୀ ମନୋଭାବକୁ ହିଁ ବୁଝାଏ । ଏହି ଉଦାରଚେତାମାନେ ହିଁ ବ୍ରେଷ୍ଟହେଷ୍ଟର ବଟପୁର ଓ ଅମଲତଂତ୍ରର କଂକର ପାଲଟିଯାଂତି । କଳା ଓ ସାହିତ୍ୟର ସୃଜନାତ୍ମକ ବିକାଶ ଅପେକ୍ଷା ନିଜର ବିକାଶ ହିଁ ଏମାନଂକର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ । ସାହିତ୍ୟ ଓ ସାଂସ୍କୃତିକ ଉତ୍ସବ, ସମାବେଶ ଇତ୍ୟାଦିରେ ଏମାନଂକର ପ୍ରାଦୁର୍ଭାବ ହିଁ ବେଶୀ । ସାଧାରଣ ଶିଳ୍ପୀ ବା ଲେଖକ କେବଳ ଦର୍ଶକ ମାତ୍ର । ଏହି ସବୁ ବିଳାସପୂର୍ଣ୍ଣ ସମାବେଶ ମାନଂକରେ ଅବିଶ୍ୱାସ୍ୟ ପରିମାଣରେ ସାଧାରଣ ଅର୍ଥ ବରବାଦ କରାଯାଏ । ଏଥିରେ କ୍ଷମତାସୀନ ବ୍ୟକ୍ତି ଓ କର୍ମଗୃହୀମାନେ ଯେପରି ଭେଳା ଭେଳା ହୁଅଂତି, ତାହା ଦେଖିଲେ କିଏ ବିଶ୍ୱାସ କରିବ ଯେ କଳା ଓ ସାହିତ୍ୟ ଏକ ସୁକୁମାର, ସ୍ୱାଧୀନ, ସୃଜନକର୍ମ, ଯାହାର ଉତ୍ସମୁଖ ହେଲ ଅଂଶତ ବ୍ୟକ୍ତିସ୍ୱାଧୀନତା ଏବଂ ବର୍ତ୍ତମାନ ଓ ଭବିଷ୍ୟତ ପ୍ରତି ଏକ ସଜାଗ ସୂକ୍ଷ୍ମଦୃଷ୍ଟି ? କଳା ଓ ସାହିତ୍ୟ ଶ୍ରେଣୀମୁକ୍ତ, ଶୋଷଣ-ମୁକ୍ତ ନୂତନ ସମାଜ ଓ ନୂତନ ରାଷ୍ଟ୍ରସତ୍ତା ଗଠନର ପ୍ରେରଣା-ଉତ୍ସ । ରାଷ୍ଟ୍ର ହିଁ ସବୁ-ବେଳେ ପ୍ରଚଳିତ ସମାଜବ୍ୟବସ୍ଥାର ରକ୍ଷୀଆଳରୂପେ ସେହି ସ୍ଥିତାବସ୍ଥା ଭିତରୁ ହିଁ ଜନ୍ମ ନେଇଥାଏ । ତାର ପୁଲିସ, ମ୍ୟାଜିଷ୍ଟ୍ରେଟ, ନ୍ୟାୟାଧିକରଣ ପ୍ରଭୃତି ନେଇ ତାକୁ ଜଗି ରହିଥାଏ । ସାହିତ୍ୟ ଯଦି ସ୍ଥିତାବସ୍ଥାକୁ ଭାଂଗିବା ପାଇଁ ପ୍ରେରଣା ଓ ମାର୍ଗ-ଦର୍ଶନ ଦେବା ପରିବର୍ତ୍ତେ ତାର ପଦଲେହନ କରେ ତେବେ ତାର ଐତିହାସିକ ଭୂମିକା ଆଉ କ'ଣ ରହିଲା ? ସାର୍ତ୍ରେ ୧୯୫୦ରେ ସାହିତ୍ୟକୁ "ଚିରଂତନ ବିପ୍ଳବ" ବୋଲି କହିଥିଲେ । ସାହିତ୍ୟର ସେ ଭାବ-ମୂର୍ତ୍ତି ବର୍ତ୍ତମାନ ଅକ୍ଷତ, ଅମ୍ଳାନ ଅଛି କି ?

ଆଧୁନିକ ସାହିତ୍ୟ ନୂତନ ଦିଗ୍‌ଦର୍ଶନ ପାଇ ତାର ସ୍ୱକୀୟ ଅଦୃଷ୍ଟକୁ ଠାବ କରୁ ଏବଂ ନିଜର ପ୍ରକୃତ ପରିଚୟ ପାଉ ଏହା ମୋର ଏକାଂତ କାମନା । ସାହିତ୍ୟର ଅଭିଧା ଯାହା ହେଉନା କାହିଁକି ତାର ଐତିହାସିକ ମାର୍ଗରୁ କେହି ତାକୁ ଭ୍ରଷ୍ଟ କରି-ପାରିବେ ନାହିଁ । □ □ □

ତା ୧୫ । ୧୦ । ୮୩

କଟକ—୧

# ପରିଶିଷ୍ଟ

## ଚେତନାର ରୂପାଂତର

[ ରୁଢ଼ ବାସ୍ତବତାର ମୁକାବିଲା କରିବା ପ୍ରଣାଳୀରେ ସେ (ଲେଖକ) ବାସ୍ତବତାର ପରିବର୍ତ୍ତନ ଘଟାଇବା ସଂଗେ ସଂଗେ ନିଜ ଚେତନାରେ ମଧ୍ୟ ପରିବର୍ତ୍ତନ ସାଧନ କରି ଚାଲନ୍ତି । ଏ ପରିବର୍ତ୍ତନ ଗୁଣାତ୍ମକ । ସାହିତ୍ୟରେ ଚେତନାର ରୂପାଂତରର ମୁଦ୍ରାଂକ ସ୍ପଷ୍ଟ । ପ୍ରକୃତ ସୃଜନଶୀଳ ସାହିତ୍ୟିକ ଫରାସୀ ପ୍ରତିକବାଦୀ କବିଗୋଷ୍ଠୀ ପରି ନୈତିବାଦ ବା ମାର୍କ୍ସବାଦରେ ଆଶ୍ରୟ ନେଇ ନ ପାରେ । ତାକୁ ତାର ଜୀବନ ଓ ସମାଜର ବୈପ୍ଳବିକ ପରିବର୍ତ୍ତନ ପାଇଁ ଲେଖନୀ ଧାରଣ କରିବାକୁ ହେବ । ସାରା ପୃଥିବୀରେ ପ୍ରଚଳିତ ସଂସ୍ଥା ଓ ମୂଲ୍ୟବୋଧ ବିରୁଦ୍ଧରେ ଯେଉଁ ପ୍ରବଳ ମୂଳବିକ୍ଷୋଭ ଦେଖାଯାଉଛି ତାହା ଏହି ଚେତନାର ରୂପାଂତରର ବହିଃପ୍ରକାଶ ମାତ୍ର ]

ଆଜି ମଣିଷର ଧ୍ୱଂସବୋଧ ଓ ବିଚ୍ଛିନ୍ନତା ଯେପରି ସୁଦୂରପ୍ରସାରୀ, ତାହା ଏଥିପୂର୍ବରୁ କେବେ ଦେଖାଯାଇ ନ ଥିଲା । ଚିନ୍ତା ଓ କର୍ମ ମଧ୍ୟରେ ବ୍ୟବଧାନ, ବ୍ୟକ୍ତିମାନସ ଓ ସମାଜମାନସ ମଧ୍ୟରେ ବିଚ୍ଛେଦ, ଅନୁଭୂତି ଓ ଚିନ୍ତା ମଧ୍ୟରେ ଅସମନସ୍ୟ ଏବଂ ଆଙ୍ଗିକ ଓ ଆତ୍ମିକ ମଧ୍ୟରେ ଅସାମଞ୍ଜସ୍ୟ,—ଏହାହିଁ ଯେପରି ଆଜିର ପରିଚିତ ପ୍ରେକ୍ଷାପଟ । ଏ ପରିସ୍ଥିତିକୁ ଲେଖକ କିମ୍ବା ନିଜେ ଏଡ଼ାଇ ପାରି ନାହିଁ । ଏ ପରିସ୍ଥିତି ତାର ଅଲଂଘନୀୟ ଉତ୍ତରାଧିକାର ଏବଂ ସାମାଜିକ ଅଦୃଷ୍ଟ କହିଲେ ଚଳେ ।

ଏଭଳି ପରିସ୍ଥିତିର ପଟାନ୍ତର ଫରାସୀ ପ୍ରତୀକବାଦର ଆଦି ଓ ମଧ୍ୟ ପର୍ବରେ କିଛିଟା ମିଳିପାରେ । ବୁଦେଲିୟର ତାଙ୍କ ଯୁଗକୁ କି ଚକ୍ଷୁରେ ଦେଖୁଥିଲେ ? କ'ଣ ଥିଲା ତାଙ୍କର ଏବଂ ମାଲାର୍ମେ, ର୍ୟାବୋଁ, ଭ୍ୟାଲେରି ପ୍ରମୁଖଙ୍କର ଆଭିମୁଖ୍ୟ ? ବୁଦେଲିୟର ତାଙ୍କ ଯୁଗକୁ ଏହିପରି ଭାବରେ ଦେଖିଛନ୍ତି—'ଯେତେବେଳେ ସବୁକିଛି ମିଥ୍ୟା ହୋଇପଡ଼େ, ଧର୍ମ, ଶାସନ, ଗଭର୍ଣ୍ଣମେଣ୍ଟ, ପ୍ରଚଳିତ ମୂଲ୍ୟ ସବୁକିଛି ଅସାର ଓ ଅଚଳ ହୋଇଯାଏ, ଯେତେବେଳେ "action is no longer the sister of dreams"। ଠିକ୍ ମଧ୍ୟଯୁଗରେ ଖ୍ରୀଷ୍ଟିଆନ ଶ୍ରମଣମାନେ ଯେପରି ନିଜକୁ ସମାଜ ଓ ସଂସାରଠାରୁ ସଂପୂର୍ଣ୍ଣ ଦୂରରେ ରଖି ବନ୍ଦ କୋଠରୀ ଭିତରେ ବସି *Virgil* ଗ୍ରନ୍ଥ ଉଦ୍ଧାରରେ ଲାଗିଥିଲେ, ଏବଂ ତଦ୍ଦ୍ୱାରା ସେଣ୍ଟ୍ ଅଗଷ୍ଟିନ ଓ ଲାଟିନ୍ କବିମାନଙ୍କର ସ୍ୱପ୍ନ ସତ୍ୟରେ ପରିଣତ ହେବ ବୋଲି ଆଶା କରୁଥିଲେ, ଠିକ୍ ସେହିପରି ବୁଦେଲିୟର, ର୍ୟାଁବୋ, ମାଲାର୍ମେ, ଭ୍ୟାଲେରି ରାଜନୀତିକ ଆଶାଭଙ୍ଗ ଓ ଧର୍ମୀୟ ବିଡ଼ମ୍ବନାରେ ପୀଡ଼ିତ ହୋଇ ଅତୀନ୍ଦ୍ରିୟବାଦକୁ ହିଁ ଆଶ୍ରୟ କରି ବଂଚିଥିଲେ ଏବଂ ନିଜ ଚିନ୍ତାକୁ ସୂକ୍ଷ୍ମରୁ ସୂକ୍ଷ୍ମତର କରିବାରେ ଏବଂ ସବୁ ଜିନିଷକୁ ତାର ବିଶୁଦ୍ଧ ରୂପରେ ଚିହ୍ନ କରିବାରେ ବ୍ୟାପୃତ ଥିଲେ ।

ଭ୍ୟାଲେରି ବୁଦେଲିୟରଙ୍କ ଭଳି ଦୃଶ୍ୟମାନ ଜଗତ୍ ଅପେକ୍ଷା ଅଦୃଶ୍ୟ ଜଗତ୍ ଉପରେ ହିଁ ଅଧିକ ଗୁରୁତ୍ୱ ଦେଇଯାଇଛନ୍ତି । ତାଙ୍କ ଚରିତ୍ର M. Teste—ଯାହାକୁ ଅନେକେ "The Ultimate Romantic" କହନ୍ତି, ଏବଂ ନିଜେ ଭ୍ୟାଲେରି ଯାହାକୁ "A monster of isolation and singular knowledge" କହିଛନ୍ତି, ଏହା ବୌଦ୍ଧିକ ଅହଂକାରର ଏକ ପ୍ରମୂର୍ତ୍ତନ ମାତ୍ର । ତାର ବାସସ୍ଥାନ ଚିନ୍ତାର ଧ୍ରୁବଲୋକରେ—ବାସ୍ତବ ଜଗତ ସହିତ ତାର କିଛି ମାତ୍ର ସମ୍ପର୍କ ନାହିଁ । ଭ୍ୟାଲେରୀ ଅସତ୍ତା ବା nothingnessକୁ ଏକ

ବିଶେଷ ଅର୍ଥରେ ବ୍ୟବହାର କରନ୍ତି—ଯାହା ଅଦ୍ୱୈତ ବେଦାନ୍ତବାଦୀର "ପ୍ରତୀତ" ସତ୍, ଅର୍ଥାତ୍ ଯାହା ଯେପରି ପ୍ରତୀତ ହୁଏ ତାହା ନୁହେଁ । ମାଲର୍ମେ ଅସତ୍କୁ ଏକ ପ୍ରତିଭାସ ରୂପେ ଦେଖିଛନ୍ତି । ସମସ୍ତ କିଛି ହିଁ ତାଙ୍କ ଦୃଷ୍ଟିରେ ମାୟା ବା ପ୍ରତିଭାସ । ବାଲେରିଙ୍କ ଦର୍ଶନର ଅନ୍ୟ ଏକ ଉପଜୀବ୍ୟ ଥିଲା ଭୌତିକ ପଦାର୍ଥର ଅହେତୁକତ୍ୱ— ଠିକ୍ ଯେପରି ଶୋପେନହାୱାରଙ୍କ ନିଷ୍କାମନା (absense of desire to be)। ଏହିପରି ବିଭିନ୍ନ ନେତିମୂଳକ ଅଭିମୁଖ୍ୟ ଇତିହାସର ବିଭିନ୍ନ ପର୍ଯ୍ୟାୟରେ ମଣିଷ ମନରେ ଧୂମ୍ରକୁଣ୍ଡଳ ସୃଷ୍ଟି କରିଛି । ତାର ସହଜ ଶକ୍ତିକୁ ଆଚ୍ଛନ୍ନ ଓ ପ୍ରତିହତ କରିଛି । ଏହି ପର୍ଯ୍ୟାୟର ଅଭିମୁଖ୍ୟ ଭ୍ୟାଲେରିଙ୍କ ଲେଖାମାନଙ୍କରେ, ବିଶେଷତଃ ତାଙ୍କର '*L' Ame et las Danse*' ରେ ( "The Soul and the Dance") ପରିସ୍ଫୁଟ ।

'The Soul's one perpetual aim is certainly that which does not exist, which was but is no longer, which will be but is not yet, that which is possible or impossible, that is the soul's business, never, never that which is."

ଅର୍ଥାତ୍ ଆତ୍ମା ଯାହା ଅଛି ତା'ଠାରୁ ଦୂରରେ ରହେ । ଯାହା ଥିଲା ଅଥଚ ବର୍ତ୍ତମାନ ନାହିଁ, ଯାହା ହୋଇପାରେ, ମାତ୍ର ଏ ପର୍ଯ୍ୟନ୍ତ ହୋଇ ନାହିଁ, ଯାହା ସମ୍ଭବ ପୁଣି ଅସମ୍ଭବ, ଆତ୍ମା ତା'ର ପ୍ରତି ଉନ୍ମୁଖ । ଯାହା ଅଛି ତା ପ୍ରତି କଦାପି ନୁହେଁ, ନୁହେଁ ।

ଆଧୁନିକ କାଳର ସ୍ଥିତିବାଦ ଅନେକଟା ଏହି ନ-ହୋଇ-ପାରିବାର ସଂଜ୍ଞାରେ ହିଁ ମଣ୍ଡିତ । ଭାରତବର୍ଷର ସଂବଦ୍ଧ ବୌଦ୍ଧ ଶୂନ୍ୟବାଦ ମଧ୍ୟରେ ଠିକ୍ ଏହିପରି ଥରେ ଏକ ଭୟଙ୍କର ନେତିତ୍ୱରେ ଆନ୍ଦୋଳିତ ହୋଇଥିଲା । ଭଗବାନ ବୁଦ୍ଧ ନେତିତ୍ୱକୁ ପରମ ପଥ ବୋଲି ଘୋଷଣା କରିଥିଲେ :—

**"Because all *Dharma* have one mark only, that is no mark. It is for this reason that all the *dharmas* have the character of not having been fully known by the Tathagatas, but just one single one is the nature of all *dharmas*. And the nature of all *dharmas* is non-nature. and the non-nature is their nature. It is thus all points of attachment is abandoned."**

*(Astasahasrika, 8, 192)*

ସମକାଳୀନ ମଣିଷର ଚେତନା ଖଂଡିତ ଓ ଭଗ୍ନାଂଶ ଚେତନା । ଏହା 'ପୂର୍ଣମଦଃ ପୂର୍ଣମିଦଂ ପୂର୍ଣାତ୍ପୂର୍ଣମୁଦଚ୍ୟତେ'ର ଧାରଣା କରିବାକୁ ଅକ୍ଷମ । ଧାରଣା କରିବା ତ ଦୂରର କଥା । ସେଭଳି କିଛି ଥାଇପାରେ ବୋଲି ମଧ୍ୟ ତାର 'ପ୍ରତ୍ୟୟ' ନାହିଁ ।

ବ୍ୟକ୍ତିତ୍ୱର ବିଖଂଡନ, ଚେତନାର ବିଭାଜନ ଏବଂ ସ୍ୱବିରୋଧ ତଥା ଅଂତ-ର୍ଦ୍ୱଂଦ୍ୱରେ ସ୍ୱବିଭକ୍ତ ମଣିଷ ମନର ଯନ୍ତ୍ରଣା, ଏହା ଆଜି ସାହିତ୍ୟର ସ୍ୱାଭାବିକ ଉପଜୀବ୍ୟ ନ ହେବାର ଉପାୟ ନାହିଁ । ଯେହେତୁ ଏ ମଣିଷ ଯେପରି ଆଜି ନିଜରଇ ଶିକାର ହୋଇ ପଡ଼ିଚି । ସେଥିରୁ ତାର ମୁକ୍ତି ନାହିଁ । ତେଣୁ ଏ ଯୁଗୀୟ ଚେତନା— 'ସିଂଧୁ'ର ଗୋଟା ଚିତ୍ର ଦେବାକୁ ଚେଷ୍ଟା ନ କରି 'ବିଂଦୁ' ମଧ୍ୟରେ ବରଂ ସିଂଧୁର ପରିଚୟ ଦେଇ ପାରିବା ଭଳି ଶୈଳିକ ମାଧ୍ୟମ ଓ ଆଂଗିକ ଅନ୍ୱେଷଣରେ ବ୍ୟସ୍ତ ।

ଏ ଯୁଗର ମଣିଷ ତା ସୀମା ସଂବଧରେ ସଚେତନ । ସେ ତାର ପୂର୍ବବର୍ତ୍ତୀ ପ୍ରଜନ୍ମର ମଣିଷ ପରି ଜଗାମଛଡ଼ା 'ଅସୀମର ସଂଧାନ'ରେ ନିଯୁକ୍ତ ରହି ପାରୁ ନାହିଁ । ତେଣୁ ଉଭୟ ଲେଖକ ଓ ପାଠକ ଏଭଳି କିଛି ଜିନିଷ ଚାହାଂତି ଯାହା ସେମାନଂକର ଉପଲବ୍‌ଧିର ପରିସରବହିର୍ଭୂତ ନୁହେ । ତା'ଛଡ଼ା ଏ ଯୁଗର ଲେଖକ ବା ଶିଳ୍ପୀ ନିଜକୁ ଅକପଟ ଭାବରେ ପ୍ରକାଶ କରିବାର ପକ୍ଷପାତୀ । ପୂର୍ବପୁରୁଷଂକ ପରି ତାର କୌଣସି ଧର୍ମୀୟ ବା ଶାସ୍ତ୍ରୀୟତାର ମୁଖା ବା ଛଦ୍ମ ଆବରଣ ଲୋଡ଼ା ନାଇ । ସେ ଧର୍ମର ଘେରାଗଳାଟା ଖୋଲି ବାସ୍ତବତାର ସୋଜାସୁଜି ମୁକାବିଲା କରିବାକୁ ଚାହେଁ । ଏହି ମୁକାବିଲା ହିଁ ତାର ଧର୍ମ ।

ରୂଢ଼ ବାସ୍ତବତାର ମୁକାବିଲା କରିବା ପ୍ରଣାଳୀରେ, ସେ ବାସ୍ତବତାରେ ପରି-ବର୍ତ୍ତନ ଘଟାଇବା ସଂଗେ ସଂଗେ ନିଜ ଚେତନାର ମଧ୍ୟ ରୂପାଂତର ଘଟାଇ ଚାଲିଚି । ଅନ୍ୟକଥାରେ କହିବାକୁ ଗଲେ— ମଣିଷ ପ୍ରକୃତିର ପରିବର୍ତ୍ତନ ଘଟାଇବା ସଂଗେ ସଂଗେ ସେ ନିଜେ ମଧ୍ୟ ପରିବର୍ତ୍ତିତ ହେଉଛି । ଏ ପରିବର୍ତ୍ତନ ଗୁଣାତ୍ମକ ପରିବର୍ତ୍ତନ, ଚେତନାର ପରିବର୍ତ୍ତନ, କେବଳ ବାହ୍ୟିକ ପରିବର୍ତ୍ତନ ନୁହେଁ । ଏହାହିଁ ଜୀବନର ଗତି ଓ ପ୍ରକୃତି, ତେଣୁ ସାହିତ୍ୟର ମଧ୍ୟ । ମଣିଷ ନିଜର ପରିବେଶ ବା ଗୋଟା ସମାଜକୁ ବଦଳାଇବାକୁ ଯାଇ ନିଜେ ବଦଳି ଚାଲିଥାଏ ଏବଂ ବଦଳିଚାଲିଚି ।

ଆଜି ପୃଥିବୀରେ ପ୍ରାୟ ସବୁଠି ଆମେ ଶୁଣିବାକୁ ପାଉଁ ସ୍ଥିତାବସ୍ଥା ବିରୁଦ୍ଧରେ ଏକ ପ୍ରବଳ ସ୍ୱର । ଏହାକୁ କେହି କେହି ଆତ୍ମଅନ୍ୱେଷଣ ବା 'Search for an identity' କହଂତି । ପ୍ରଚଳିତ ବ୍ୟବସ୍ଥା ମଧ୍ୟରେ ତରୁଣ ବଂଶଧର ନିଜକୁ ହରାଇ ବସିଛି ବୋଲି ସ୍ଥିତବାଦୀଠାରୁ ସ୍ଥିତସ୍ଥାପକ ପର୍ଯ୍ୟଂତ ସମସ୍ତେ ପ୍ରାୟ ଏକମତ ।

ଆମେରିକାରେ ଅନେକ ସମାଜବିଜ୍ଞାନୀଙ୍କ ମତରେ ପ୍ରେସିଡେଣ୍ଟ କେନେଡିଙ୍କ ହତ୍ୟା ପରଠାରୁ ଏହି ପର୍ଯ୍ୟାୟର ଆରମ୍ଭ । ଏହି ଅବସ୍ଥାକୁ ପ୍ରେସିଡେଣ୍ଟ ନିକ୍ସନଙ୍କ 'ଅରବାନ୍ ଆଫାୟରସ' ବିଭାଗର ସ୍ୱତନ୍ତ୍ର ସହକାରୀ ଡଃ ପି. ମହାନନ୍ଦ୍ୟମ । * ଆମେରିକାନ୍ ତରୁଣର ପ୍ରବଳ ଦ୍ରୋହବାଦ ଓ ବିକ୍ଷୋଭର ଯୁଗ ବୋଲି ଅଭିହିତ କରିଛନ୍ତି । ଏହି ଶିବିରରେ ଆମେ ଦୁଇପ୍ରକାର ମତବାଦ ଦେଖିବାକୁ ପାଉଁ । ପ୍ରଚଳିତ ଅନୁଷ୍ଠାନର ସିଦ୍ଧାନ୍ତଠାରୁ ଭିନ୍ନ ମତ ପୋଷଣ କରୁଥିବା ଏବଂ ପ୍ରଚଳିତ ଅନୁଷ୍ଠାନର (ବା ସଂସ୍ଥାର) ସମସ୍ତ ସିଦ୍ଧାନ୍ତକୁ ପ୍ରତ୍ୟାଖ୍ୟାନ କରୁଥିବା ଏହିପରି ଦୁଇଟି ଶ୍ରେଣୀରେ ଏ ଶିବିର ବିଭକ୍ତ । ପଞ୍ଚମ ଦଶକଟି ଥିଲା ଶାନ୍ତ ଓ ନିର୍ଗୁଣ ସମାଜ ପକ୍ଷରେ ଏକ ନିରୂପ ସମୟ । ସେତେବେଳେ ସେମାନଙ୍କ ବିରୋଧରେ ସ୍ଥିତାବସ୍ଥାର ନୀରବ ସମର୍ଥକ (quiscent conformism) ବୋଲି ଅଭିଯୋଗ ଉଠିଥିଲା । ତେଣୁ ଦ୍ୱିତୀୟ ମହାଯୁଦ୍ଧୋତ୍ତର କାଳର ତରୁଣ ସଂପ୍ରଦାୟ ନିକଟରେ ବର୍ତ୍ତମାନର (ଖ୍ରୀ ୧୯୬୫-୧୯୭୨) ସଂକ୍ଷୁବ୍ଧ ସମୟ ଆଶ୍ଚର୍ଯ୍ୟଜନକ ମନେ ହୋଇପାରେ ।

ଏହି ଅଭୂତପୂର୍ବ ପରିସ୍ଥିତିରୁ ପ୍ରଚଳିତ ସମାଜ କଣ ଶିକ୍ଷା କରିବ ନ କରିବ ତାହା ଭବିଷ୍ୟତ ହିଁ କହିବ । କିନ୍ତୁ, ବର୍ତ୍ତମାନ ପୃଥିବୀର ସର୍ବତ୍ର ଏକ ମୁକାବିଲା-ପନ୍ଥୀ ଯୁବସାମ୍ପ୍ରଦାୟ ଗଢ଼ି ଉଠିଚି । ମେକ୍ସିକୋଠାରୁ ଆରମ୍ଭ କରି ଇଂଲଣ୍ଡ, ଫ୍ରାନ୍ସ, ଜାପାନ, ଭାରତବର୍ଷ ଏବଂ ଲାଟିନ ଆମେରିକା ଯାଏଁ ଏ ଆନ୍ଦୋଳନ ପ୍ରସାରିତ । ଅଣମାର୍କସବାଦୀ,—ଏପରିକି ଅଣରାଜନୀତିକ (apolitical) ବହୁ ଯୁବକ ଯୁବତୀ ଏହି ଆନ୍ଦୋଳନରେ ସକ୍ରିୟ ଅଂଶ ନେଉଥିବାର ଦେଖାଯାଉଚି ।

ମୂଳତ ଏ ଆନ୍ଦୋଳନ ପ୍ରଚଳିତ ସଂସ୍ଥା ବିରୋଧରେ ଏବଂ ପ୍ରଚଳିତ ମୂଲ୍ୟବୋଧ ବିରୋଧରେ—ଯେଉଁ ମୂଲ୍ୟର କି କୌଣସି ମାନେ ନାହିଁ କି ସାମାଜିକ ପ୍ରାସଙ୍ଗିକତା ମଧ୍ୟ ନାହିଁ, ଅଥଚ ଯାହା ମଣିଷର ପ୍ରଗତି ପଥରେ ବାଧା ସୃଷ୍ଟି କରି-ଚାଲିଚି । ଅନେକ ସମୟରେ ଏହି ଆନ୍ଦୋଳନର ନେତୃତ୍ୱ ନବ୍ୟମାର୍କସ୍‌ବାଦୀମାନଙ୍କ ହାତକୁ ଚାଲିଗଲେ ମଧ୍ୟ ମୁଖ୍ୟତ ଏହା ଏକ ସାଧାରଣ ଯୁବ ଆନ୍ଦୋଳନ ହିଁ ହୋଇ ରହିଚି । ଡଃ ମହାନନ୍ଦ୍ୟମଙ୍କ ମତରେ ଏ ଆନ୍ଦୋଳନ ପ୍ରଧାନତ ମନସ୍ତାତ୍ତ୍ୱିକ । କୌଣସି ଖାସ୍ ମତବାଦରୁ ଏହାର ଜନ୍ମ ନୁହେଁ । ବର୍ତ୍ତମାନ ମତବାଦ-ନିରପେକ୍ଷ

* ସେ କିଛିଦିନ ପୂର୍ବେ ଭାରତରେ ରାଷ୍ଟ୍ରଦୂତ ମଧ୍ୟ ଥିଲେ ।

ଉଦାରନୈତିକତାରେ ହିଁ ଯୁବସମାଜ ବିଶ୍ୱାସ କରେ, ଠିକ୍ ଯେପରି ରୋମାନ ସାମ୍ରାଜ୍ୟରେ ଏକ ରାଷ୍ଟ୍ରସ୍ୱୀକୃତ ଧର୍ମ ଥିଲେ ମଧ୍ୟ ତା ପାଖାପାଖି ଖ୍ରୀଷ୍ଟଧର୍ମକୁ ମଧ୍ୟ ଯଥେଷ୍ଟ ସ୍ୱାଧୀନତା ଦିଆ ଯାଇଥିଲା । ଅନେକେ ମଧ୍ୟ କହଂତି ଯେ ଉଦାରନୈତିକତାର ଜନ୍ମ ଅଭିଜ୍ଞତା ମଧ୍ୟରୁ; କୌଣସି ବାଦ୍ କାରଣରୁ ନୁହେଁ । ତେଣୁ ଚରମ ଉଦାର-ନୈତିକ ଦୃଷ୍ଟିଭଂଗୀ ବୋଲି କିଛି ନାହିଁ । ଏହା ପ୍ରାଗ୍ମାଟିକ୍ ବା ବାସ୍ତବବାଦୀ ।

ହାର୍ଭାର୍ଡ ବିଶ୍ୱବିଦ୍ୟାଳୟର ଅଂତର୍ଜାତୀୟ କଳା-ବିଜ୍ଞାନ ସେମିନାରର ପୂର୍ବତନ କାର୍ଯ୍ୟକାରୀ ଡିରେକ୍ଟର ଏବଂ ବର୍ତ୍ତମାନ ସ୍ୱରାଷ୍ଟ୍ର ସଚିବ ଏବଂ ପରେ ପରରାଷ୍ଟ୍ର ସଚିବ ଡଃ ହେନେରୀ କିସିଂଜର୍ କହିଛଂତି : ଆମେରିକାନ ଯୁବସମାଜର ଏକ ଆଦର୍ଶବାଦୀ ଅଂଶ ପ୍ରଚଳିତ ମୂଲ୍ୟ ଓ ସଂସ୍ଥା ବିରୋଧରେ ଏକ ଜୋରଦାର ଆହ୍ୱାନ-ରୂପେ ଆତ୍ମପ୍ରକାଶ କରିଚି । ପଂଚମ ଦଶକ ଅର୍ଥାତ୍ କେନେଡି ଯୁଗର * ଆଦର୍ଶ ଥିଲା ଆତ୍ମବିଶ୍ୱାସ ଉପରେ ପ୍ରତିଷ୍ଠିତ ଏକ ନୂତନ ନିର୍ମାଣର ଜିଗୀଷା । ଏହାର ଅଭିବ୍ୟକ୍ତି ହୋଇଥିଲା ଐକାଂତିକ ଗଠନମୂଳକ କାର୍ଯ୍ୟରେ ।

ଆଜି କିଂତୁ ଯୁବସମାଜର ଏକ ବୃହତ୍ ଅଂଶ କ୍ଷମତା ପରିଚାଳନାକୁ ଅପ୍ରାସଂଗିକ ବୋଲି ମନେ କରଂତି । ଆଜି 'ଲିବର୍ଟି'ର ନୈତିକ ଭିତ୍ତି ଅଛି civic ନୁହେଁ । ତରୁଣ ବଂଶଧର ଶାଂତି ଓ ଶୃଂଖଳା ଜୋର ସମସ୍ତ ପ୍ରଚଳିତ ଧାରଣା ପ୍ରତି ଉଦାସୀନ, ଏପରିକି ବିରୋଧଭାବାପନ୍ନ । ଡଃ କିସିଂଜର କହଂତି :—

"Management is equated with manipulation. Structural designs are perceived as system of domination—not of order."

ଡଃ କିସିଂଜର ପ୍ରଜନ୍ମଗତ ବ୍ୟବଧାନକୁ (generation gapକୁ) ଏଇ ଯୁବ ବିକ୍ଷୋଭର ଅନ୍ୟତମ ମୌଳିକ କାରଣ ବୋଲି ମନେ କରଂତି । ତାଂକ ମତରେ ବର୍ତ୍ତମାନର ବଂଶଧରର ନିକଟ ଅତୀତ ସଂବଂଧରେ କୌଣସି ପ୍ରତ୍ୟକ୍ଷ ଜ୍ଞାନ ବା ସ୍ମୃତି ପ୍ରାୟ ନାହିଁ । ତେଣୁ ଆମେରିକାନ ଉଦ୍ୟମରେ ଯେଉଁ ସବୁ ନୂତନ ନିର୍ମାଣ ବା ଉଦ୍ଭାବନମାନ ଅଭୂତପୂର୍ବ ସଫଳତା ଲାଭ କରିଥିଲା ସେ ସବୁ ସଂବଂଧରେ କିଂବା ତାର ଉଦ୍ଦେଶ୍ୟ ବା ଆଶୁ ଫଳାଫଳ ସଂବଂଧରେ ସେମାନେ ପ୍ରାୟ କିଛି ଜାଣଂତି ନାହିଁ

* ସମାଂତରାଳ ଭାବରେ ଏହାକୁ ଭାରତରେ ନେହେରୁ ଯୁଗର ମଧ୍ୟପର୍ବ ବୁଝାଯାଇପାରେ ।

ବୋଲି କୁହାଯାଇପାରେ । ତେଣୁ ସେମାନେ ସମସ୍ତ ବ୍ୟବସ୍ଥା ପ୍ରତି ବିତଶ୍ରଦ୍ଧ ବା ବିମୁଖ ହୋଇଉଠିବା ସ୍ୱାଭାବିକ । ଆମେରିକାର ଭିଏତନାମୀ ନୀତି ବିରୋଧରେ ସେମାନେ ଶତଜିହ୍ୱ ହୋଇ ଉଠଂତି ମାତ୍ର ରୁଷର ହାଂଗେରୀ ବ୍ୟାପାରରେ ହସ୍ତକ୍ଷେପ ସମ୍ବନ୍ଧରେ ସେମାନେ ବେଶୀ କିଛି ଜାଣଂତି ନାହିଁ ।

ପୃଥିବୀର ସବୁ ଦେଶରେ ପ୍ରାୟ ଏଇ ବିକ୍ଷୁବ୍ଧ ଅବସ୍ଥା । ଏଇ ନଞାର୍ଥକ ମନୋଭାବର ପରିଣାମ ଯେ କ'ଣ ହୋଇପାରେ ତାହା ବର୍ତ୍ତମାନ ଠିକ୍ କହିବା ଅସଂଭବ ।

ସମକାଳୀନ କାବ୍ୟ, କବିତା, ଗଳ୍ପ, ଉପନ୍ୟାସ, ନାଟକ ଓ ଶିଳ୍ପରେ ସ୍ଥିତାବସ୍ଥା ପ୍ରତି ଭୟଂକର ବିତୃଷ୍ଣା ପ୍ରକାଶ ପାଉଛି । ଏଇ ବିତୃଷ୍ଣା ହିଁ ହୁଏତ ଦିନେ ସଶସ୍ତ୍ର ବିପ୍ଳବର ରୂପ ନେବ ଏବଂ ପ୍ରଚଳିତ ବ୍ୟବସ୍ଥାକୁ ଭାଂଗି ଏକ ନୂତନ ସମାଜ-ବ୍ୟବସ୍ଥା ପ୍ରବର୍ତ୍ତନ କରିବାର ମାର୍ଗଦର୍ଶନ ଦେବ । ଇତିହାସର ଏଇ ଆହ୍ୱାନ ପ୍ରତି ସଚେତନ ରହିବା ପ୍ରତ୍ୟେକ ମନନଶୀଳ ବ୍ୟକ୍ତିର କର୍ତ୍ତବ୍ୟ ।

କଟକ—୧ □ □ □

ଅକ୍ଟୋବର, ୧୯୭୩

